# ଜୀବନ ଝରସ୍ରୋତା

## (ଜୀବନ : ପ୍ରତିଭା)

ସଂକଳନ

ଉତ୍କଳ ପାଠକ ସଂସଦ

ପ୍ରକାଶକ



ଓଡ଼ିଶା ବୁକ୍ ଷ୍ଟୋର

ଜୀବନ ଖରସ୍ରୋତା
(ଜୀବନ: ପ୍ରତିଭା)
ସଂକଳନ :
ଉତ୍କଳ ପାଠକ ସଂସଦ
ମହତାବ ରୋଡ୍, କଟକ - ୧୨
ସମ୍ପାଦନା :
ଶ୍ରୀ ସୁବ୍ରତ ପ୍ରିୟବ୍ରତ ମହାନ୍ତି
ସହ ସମ୍ପାଦନା :
ମୀନାକ୍ଷୀ ଦେବୀ
ମିତାଲି ପାଲ୍
ଡଃ ଶ୍ରୀଚରଣ ଦାସ
ଶ୍ରୀ ବସନ୍ତ କୁମାର ସାହୁ
ପ୍ରକାଶ କାଳ :
**ତା:୧୬.୦୫.୨୦୧୫**
ପ୍ରକାଶକ :
**ଓଡ଼ିଶା ବୁକ୍ ଷ୍ଟୋର**
ବିନୋଦ ବିହାରୀ,
କଟକ - ୭୫୩ ୦୦୨
ପ୍ରଚ୍ଛଦ ଶିଳ୍ପୀ : ଶଶିକାନ୍ତ ରାଉତ
ଛାପା ସଂଖ୍ୟା : ୫୦୦
ଅକ୍ଷରସଜ୍ଜା :
ମୀନାକ୍ଷୀ ଡି.ଟି.ପି.
ଚକୋଲେଟ୍ ଲେନ୍, ଝାଞ୍ଜିରୀମଙ୍ଗଳା,
କଟକ -୯
ମୁଦ୍ରଣ :
ରେଖା ପ୍ରେସ୍
ବାଙ୍କିସାହି (କୁମ୍ଭାର ସାହି),
କଟକ - ୯
**ମୂଲ୍ୟ - ୫୦.୦୦ ଟଙ୍କା**

**JIBANA KHARASROTA**
(A Biographical Book)

*Compiled by*
UTKAL PATHAK SAMSAD
Sujata Bhawan
Kalinga Lane
Mahatab Road
Cuttack -12

*Published by*
**ORISSA BOOK STORE**
Binod Behari
Cuttack - 753 002

**1st. Edition : 16.05.2015**

**Price : Rs. 50.00**

# ସୂଚିପତ୍ର


| ବିଷୟ | ପୃଷ୍ଠା | ଲେଖକ |
|---|---|---|
| ନିରଳସ ସ୍ରଷ୍ଟା<br>ଡକ୍ଟର ଶ୍ରୀନିବାସ ମିଶ୍ର | ୧ | ଡକ୍ଟର ଶ୍ରୀଚରଣ ଦାସ |
| ସ୍ୱାଭିମାନୀ ପ୍ରାବନ୍ଧିକ<br>ଡକ୍ଟର ଧରଣୀଧର ପାଣିଗ୍ରାହୀ | ୧୮ | ସୁଜାତା ମହାପାତ୍ର |
| ଜୀବନ ନାଟକର ନାୟକ<br>ନାଟ୍ୟକାର କାର୍ତ୍ତିକ ଚନ୍ଦ୍ର ରଥ | ୨୬ | ଡକ୍ଟର ଗୋବିନ୍ଦ ଚନ୍ଦ୍ର ଚାନ୍ଦ |
| ନମସ୍ୟ ସ୍ରଷ୍ଟା<br>ନନ୍ଦକିଶୋର | ୫୪ | ଭୁବନମୋହନ ମହାନ୍ତି<br>ଦୟାନିଧି ନାୟକ |
| ଓଡ଼ିଶୀ ନୃତ୍ୟ ପାଇଁ ସମର୍ପିତ ଶିଳ୍ପୀ<br>ସୁଧାକର ସାହୁ | ୭୧ | ମନୋଜ ପଟ୍ଟନାୟକ |
| ସଙ୍ଗୀତଜଗତର ଅନ୍ୟଜଣେ ତାନ୍‌ସେନ୍<br>ତାନ୍‌ସେନ୍ ସିଂ | ୭୬ | ମୀନାକ୍ଷୀ ଦେବୀ |
| ହାସ୍ୟାଭିନେତା<br>ସୁରେଶ ଚନ୍ଦ୍ର ବଳ (ବାଙ୍କୁ) | ୮୫ | ସୁବ୍ରତ ପ୍ରିୟବ୍ରତ ମହାନ୍ତି |


❖✶❖

# ଉତ୍କଳ ପାଠକ ସଂସଦ

## ପ୍ରତିଷ୍ଠାତା - ଡକ୍ଟର ବ୍ରଜମୋହନ ମହାନ୍ତି

ସଭାପତି : ଶ୍ରୀ ପଠାଣି ପଟ୍ଟନାୟକ

ଉପ-ସଭାପତି : ଶ୍ରୀ ସୁଭାଷ ଚନ୍ଦ୍ର ମହାନ୍ତି

ସମ୍ପାଦକ : ଶ୍ରୀ ସୁବ୍ରତ ପ୍ରିୟବ୍ରତ ମହାନ୍ତି

## ପରାମର୍ଶଦାତା

ଶ୍ରୀ ନଦିୟା ବିହାରୀ ମହାନ୍ତି (ବଡ଼ଭାଇ), ଶିଶୁ ସାହିତ୍ୟିକ

ଶ୍ରୀ ଗୌର ପଟ୍ଟନାୟକ, ଗୀତିକାର

ଶ୍ରୀମତୀ ମୀନାକ୍ଷୀ ଦେବୀ, ଗାଳ୍ପିକା

ଶ୍ରୀ ବିନୋଦ ଦାଶ, ଅଧ୍ୟକ୍ଷ, ସିନର୍ଜି ଇନ୍‌ଷ୍ଟିଚ୍ୟୁଟ୍

ଶ୍ରୀ ବିଜୟ ଶଙ୍କର ପାତ୍ର, ପ୍ରକାଶକ

ଇଂ. ଦ୍ୱୈପାୟନ ପଟ୍ଟନାୟକ, ଅଧୀକ୍ଷଣ ଯନ୍ତ୍ରୀ

## ପରିଚାଳନା

ଡଃ ଶ୍ୟାମସୁନ୍ଦର ମିଶ୍ର

ଶ୍ରୀ ରାହାସ ରାୟ

ଡଃ ଶ୍ରୀଚରଣ ଦାସ

ଶ୍ରୀ ବସନ୍ତ ମହାନ୍ତି

ଶ୍ରୀମତୀ ସୌଦାମିନୀ ମହାନ୍ତି

ଶ୍ରୀ ଯମେଶ୍ୱର ତ୍ରିପାଠୀ

ଶ୍ରୀ ଅରୁଣ କୁମାର ପଣ୍ଡା

ଶ୍ରୀ ବରଦା ପ୍ରସନ୍ନ ପଟ୍ଟନାୟକ

ଡଃ ବୀଣାପାଣି ସିଂହ

ଡଃ ଶାନ୍ତନୁ କୁମାର ରଥ

ଶ୍ରୀମତୀ ମିତାଲି ପାଲ୍

ଶ୍ରୀ ଚନ୍ଦ୍ରଶେଖର ପ୍ରଧାନ

ଅଧ୍ୟାପକ ତୁଷାର ପଟ୍ଟନାୟକ

ଶ୍ରୀମତୀ କାଶ୍ମୀର ମହାନ୍ତି

ଶ୍ରୀ ସୂର୍ଯ୍ୟମଣି ଖୁଣ୍ଟିଆ

ଶ୍ରୀମତୀ ସୁଦିପ୍ତା ଦାଶ

ଶ୍ରୀମତୀ କାକଲୀ ପାଲ

ଶ୍ରୀ ବସନ୍ତ କୁମାର ସାହୁ

ଶ୍ରୀ ବିଶ୍ୱଜ୍ୟୋତି ପାତ୍ର



# 'ଉତ୍କଳ ପାଠକ ସଂସଦ' ପରିବାର

ବିଶେଶ୍ୱର ପଣ୍ଡା
ଡଃ କୃଷ୍ଣଚରଣ ବେହେରା
ଅନ୍ନଦା କିଙ୍କର ମହାନ୍ତି
ଡଃ ହରିହର କାନୁନ୍‌ଗୋ
ଡଃ ବୈଷ୍ଣବ ଚରଣ ସାମଲ
ନିର୍ମଳ ଚନ୍ଦ୍ର ପହୀ
ଦେବଦତ୍ତ ସାମନ୍ତସିଂହାର
ଡଃ ଶୈଳେଶ୍ୱର ନନ୍ଦ
କାଞ୍ଚନାରାୟଣ ମହାନ୍ତି
ଡଃ ଗୁରୁପ୍ରସାଦ ମହାନ୍ତି
ରାମକୃଷ୍ଣ ପତି (ଚାରଣ)
ନବୀନ ପଟ୍ଟନାୟକ
ଧ୍ରୁବ ଚରଣ ସାହୁ
ଶଙ୍କର୍ଷଣ ମଙ୍ଗରାଜ
ଗଙ୍ଗାଧର ମହାରଣା
ଗୋକୁଳାନନ୍ଦ ଦାସ
ମାନସ ପ୍ରଧାନ
ସନ୍ତୋଷ ପ୍ରଧାନ
ମୃତ୍ୟୁଞ୍ଜୟ ସାମଲ
ବନବିହାରୀ ମହାନ୍ତି
ଡାକ୍ତର ପ୍ରତାପ କିଶୋର ମିଶ୍ର

ଡଃ ସତ୍ୟାନନ୍ଦ ସାଇଁ
ମାନସ ଦାସ
କନକମଞ୍ଜରୀ ମହାନ୍ତି
ଚଣ୍ଡୀଚରଣ ରାଉତରାୟ
ଅମିତା ବେହେରା
ଦୁର୍ଗାଚରଣ ଷଡ଼ଙ୍ଗୀ
ଦୀନକୃଷ୍ଣ ମିଶ୍ର
ଅର୍ଜୁନ ଦାଶ
ଧ୍ରୁବଚରଣ ପଣ୍ଡା
ରଘୁନାଥ ମହାପାତ୍ର
ମହେଶ୍ୱର ରଥ
ସରୋଜିନୀ ମିଶ୍ର
ସୁନାମଣି ସାମଲ
ସ୍ୱର୍ଣ୍ଣଲତା ସିଂହସାମନ୍ତ
ବିବେକାନନ୍ଦ ପଟ୍ଟନାୟକ
ତପନ ମିତ୍ର
ବ୍ରହ୍ମାନନ୍ଦ ମହାନ୍ତି
ଲକ୍ଷ୍ମୀ ମିଶ୍ର
ଚିତ୍ତରଞ୍ଜନ କର
କୁନ୍ତଳା ବେହେରା
ଦିବ୍ୟଜ୍ୟୋତି ପାଣି



# ଆମର ଆଭିମୁଖ୍ୟ

୧୯୭୦ ମସିହାରେ ଜାତିସଂଘ ପକ୍ଷରୁ ଆୟୋଜିତ ଆନ୍ତର୍ଜାତିକ ପୁସ୍ତକ ବର୍ଷ ଅବସରରେ ଜନ୍ମଲାଭ କରିଥିଲା 'ଉତ୍କଳ ପାଠକ ସଂସଦ' । ଏହି ବର୍ଷଠାରୁ ପୁସ୍ତକ ପ୍ରସାର ଉଦ୍ଦେଶ୍ୟରେ ଆଲୋଚନାଚକ୍ର, ପୁସ୍ତକ ପ୍ରଦର୍ଶନୀ, ବୈଷୟିକ ଆଲୋଚନା, କବି ସମ୍ମେଳନ, ହାସ୍ୟରସାତ୍ମକ କାର୍ଯ୍ୟକ୍ରମ, ଛାତ୍ରଛାତ୍ରୀଙ୍କ ମଧ୍ୟରେ ବିଭିନ୍ନ ପ୍ରତିଯୋଗିତା, ଲୋକବାଦ୍ୟ, ଓଡ଼ିଶୀ ସଙ୍ଗୀତ, ଓଡ଼ିଶୀ ନୃତ୍ୟର ପ୍ରସାର, ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନ ପ୍ରଦର୍ଶନ, ସେମାନଙ୍କ ଜୀବନୀ ଉପରେ ଆଧାରିତ ପୁସ୍ତକ ପ୍ରକାଶନ ଏବଂ ଭାଷା, ସଂସ୍କୃତି ଓ ସମାଜର କଲ୍ୟାଣ ଉଦ୍ଦେଶ୍ୟରେ ବିଭିନ୍ନ ବିଷୟବସ୍ତୁ ଉପରେ ବିଶେଷ ସଂକଳନ ପ୍ରକାଶ କରାଯାଉଛି । ଏତଦ୍‌ବ୍ୟତୀତ ଗ୍ରାମାଞ୍ଚଳରେ ଉଦ୍‌ଘାଟନ ଉତ୍ସବର ଆୟୋଜନ କରି ନୂତନ ସାହିତ୍ୟିକ ସୃଷ୍ଟି ଓ ବୈଷୟିକ ଆଲୋଚନାଦ୍ୱାରା ଲୋକମାନଙ୍କର ବୌଦ୍ଧିକ ବିକାଶ ଦିଗରେ ସାହାଯ୍ୟ କରିବା ପାଇଁ ମଧ୍ୟ ସଂସଦ ପଦକ୍ଷେପ ନେବାକୁ ଯତ୍ନ କରିଛି ।

'ଉତ୍କଳ ପାଠକ ସଂସଦ' ବିଚାର କରେ ଯେ– ଏ ଜାତିର ଶତ ଶତ ପ୍ରତିଭାଧର ବ୍ୟକ୍ତି ସ୍ୱ ସ୍ୱ କ୍ଷେତ୍ରରେ ସୁପ୍ରତିଷ୍ଠିତ । କଳା, ବିଜ୍ଞାନ, ସାହିତ୍ୟ, ସଂସ୍କୃତି, ଶିକ୍ଷା, ଭାସ୍କର୍ଯ୍ୟ, କ୍ରୀଡ଼ା ଇତ୍ୟାଦି ବିଭିନ୍ନ କ୍ଷେତ୍ରରେ ସେମାନଙ୍କର ସ୍ୱାକ୍ଷର ସୁସ୍ପଷ୍ଟ । ସେମାନଙ୍କ ମଧ୍ୟରୁ କେତେକ ହୁଏତ ସମାଜରେ ସ୍ୱୀକୃତ, ସମ୍ମାନିତ, ମାତ୍ର ବିଭିନ୍ନ କାରଣରୁ ଆହୁରି ଅନେକ ଉପଯୁକ୍ତ ସମ୍ମାନ ଲାଭରୁ ବଞ୍ଚିତ ।

କିନ୍ତୁ ମନେରଖିବାକୁ ହେବ ଯେ– ପ୍ରତିଭାପୂଜା ଗୋଟିଏ ଜାତିର ସାଂସ୍କୃତିକ ଜୀବନକୁ ବଳିଷ୍ଠ ତଥା ଋଦ୍ଧିମନ୍ତ କରିଥାଏ । ଓଡ଼ିଶାରେ ଅନେକ କୃତୀ ସନ୍ତାନ ଜନ୍ମଗ୍ରହଣ କରି ବିଭିନ୍ନ କ୍ଷେତ୍ରରେ ଆନ୍ତର୍ଜାତିକ ସମ୍ମାନର ଅଧିକାରୀ ହୋଇପାରିଥିଲେ ସୁଦ୍ଧା ସେମାନଙ୍କର ଜୀବନୀ ଏବଂ କୃତି ଯଥାଯଥ ଭାବରେ ସଂଗୃହୀତ ହୋଇପାରି ନାହିଁ । 'ଉତ୍କଳ ପାଠକ ସଂସଦ' ପୂଜ୍ୟପୂଜାର ପରମ୍ପରା ରକ୍ଷା କରି ଜୀବିତ ପ୍ରତିଭାଧର ବ୍ୟକ୍ତିମାନଙ୍କୁ

ସମ୍ମାନ ଦେବାର କିଞ୍ଚିତ ପ୍ରୟାସ କରିଛି । ଏହି କାର୍ଯ୍ୟକ୍ରମ ଅନୁସାରେ ୧୯୭୦ ମସିହାଠାରୁ ପ୍ରତ୍ୟେକ ବର୍ଷ ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନିତ କରାଯାଉଅଛି । ଏହି ବ୍ୟକ୍ତିମାନଙ୍କ ମଧ୍ୟରେ ଅଛନ୍ତି ସର୍ବଶ୍ରୀ କାହ୍ନୁଚରଣ ମହାନ୍ତି, ରାଧାମୋହନ ଗଡ଼ନାୟକ, ରାଜକିଶୋର ପଟ୍ଟନାୟକ, ତାରିଣୀ ଚରଣ ପାତ୍ର, କେଳୁଚରଣ ମହାପାତ୍ର, ଭଗବାନ ପତି, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ଡକ୍ଟର ମିନତୀ ମିଶ୍ର, ସାମୁଏଲ ସାହୁ (ବାବି) ଓ ଅନ୍ୟମାନେ । ପ୍ରଥମ ପାଞ୍ଚ ବର୍ଷରେ କେବଳ ମାନପତ୍ର ଦେଇ ଏହି ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନିତ କରିବାରେ ଏ ସଂସଦ ସନ୍ତୁଷ୍ଟ ହୋଇ ପାରିଲା ନାହିଁ । ସେଥିପାଇଁ ପରେ ପ୍ରତ୍ୟେକ ବର୍ଷ ସମ୍ମାନିତ ପ୍ରତିଭାଙ୍କ ଜୀବନ ଚରିତ ଓ କାର୍ଯ୍ୟକଳାପର ବିବରଣୀ ପୁସ୍ତକ ଆକାରରେ ପ୍ରକାଶ କରି ଆସୁଅଛି ।

ଏହି ସଂସଦ ପକ୍ଷରୁ ଏପର୍ଯ୍ୟନ୍ତ ଅନେକ ଗୁଡ଼ିଏ ଜୀବନୀ ସଂକଳନ ପ୍ରକାଶ ପାଇଲାଣି ।

୧୯୭୬ – **'ପ୍ରତିଭା ପରିଚୟ'** ପୁସ୍ତକରେ ସାହିତ୍ୟସାଧକ କାଳିନ୍ଦୀଚରଣ ପାଣିଗ୍ରାହୀ, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ସାହିତ୍ୟିକ ଓ ସାମ୍ବାଦିକ ଉଦୟନାଥ ଷଡ଼ଙ୍ଗୀ, ନାଟ୍ୟକାର କାର୍ତ୍ତିକ କୁମାର ଘୋଷ, ମାଷ୍ଟର ରାମଚନ୍ଦ୍ର ମାଣିଆ, ସ୍ୱରସାଧକ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ, ପୁସ୍ତକ ପ୍ରକାଶକ ଅନନ୍ତ ମିଶ୍ରଙ୍କ ଜୀବନୀ ଓ କୃତି ଆଲୋଚିତ ।

୧୯୭୭ – **'ସପ୍ତ ରଶ୍ମି'** ପୁସ୍ତକରେ ପ୍ରଖ୍ୟାତ ସାମ୍ବାଦିକ ଡକ୍ଟର ରାଧାନାଥ ରଥ, ଔପନ୍ୟାସିକ ଗୋପିନାଥ ମହାନ୍ତି, ଚିତ୍ରଶିଳ୍ପୀ ବିପିନ ବିହାରୀ ଚୌଧୁରୀ, ଅନୁବାଦକ ଲାଲା ନଗେନ୍ଦ୍ର କୁମାର ଦାସ, ସଙ୍ଗୀତ ସାଧକ ବାଳକୃଷ୍ଣ ଦାଶ, ଗବେଷକ ସତ୍ୟନାରାୟଣ ରାଜଗୁରୁ ଏବଂ ପୁସ୍ତକ ପ୍ରକାଶକ ଗୋକୁଳ ଚନ୍ଦ୍ର କରଙ୍କ ଜୀବନୀ ଓ କୃତି ପ୍ରକାଶିତ ।

୧୯୭୮ – **'ସପ୍ତ ଶିଖା'** ପୁସ୍ତକରେ ଅଭିନେତା ଯତୀନ୍ ଦାସ, ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ବିପ୍ଳବୀ ରାଜକୃଷ୍ଣ ବୋଷ, ଚିତ୍ରଶିଳ୍ପୀ ମୁରଲୀଧର ଟାଲି, ସାମ୍ବାଦିକ ଶ୍ରୀହର୍ଷ ମିଶ୍ର, କଥାସାହିତ୍ୟସାଧକ ସୁରେନ୍ଦ୍ର ମହାନ୍ତି, ସଙ୍ଗୀତଜ୍ଞ ଶ୍ୟାମସୁନ୍ଦର ଧୀର ଏବଂ ରୁଚିବନ୍ତ ପ୍ରକାଶକ ଗୋବିନ୍ଦ ଚରଣ ପାତ୍ରଙ୍କ ସାଧନାପୂର୍ଣ୍ଣ ଜୀବନୀ ସନ୍ନିବିଷ୍ଟ ।

୧୯୭୯ – **'ସପ୍ତ ପ୍ରଦୀପ'** ପୁସ୍ତକରେ ଛଉନୃତ୍ୟଗୁରୁ ଚନ୍ଦ୍ରଶେଖର ଭଞ୍ଜ, ଚିତ୍ରଶିଳ୍ପୀ ହରିଶରଣ ମହାପାତ୍ର, ସଙ୍ଗୀତସାଧକ ଜଗବନ୍ଧୁ ସାହୁ, ବିଚ୍ଛିନ୍ନାଞ୍ଚଳ କବି ଜଗନ୍ନାଥ ବର୍ମା, ଜନସେବୀ ନିତ୍ୟାନନ୍ଦ କାନୁନ୍‌ଗୋ, ଶିକ୍ଷାବିତ୍ ପ୍ରଫେସର ପ୍ରହ୍ଲାଦ ପ୍ରଧାନ, ସାରସ୍ୱତ ସାଧକ ଶ୍ରଦ୍ଧାକର ସୂପକାରଙ୍କ କୃତି ବର୍ଣ୍ଣିତ ।

୧୯୮୦ – **'ସପ୍ତଶ୍ରୀ'** ପୁସ୍ତକରେ ସାହିତ୍ୟସେବୀ ଡକ୍ଟର ହରେକୃଷ୍ଣ ମହତାବ, ଐତିହାସିକ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ନାଟ୍ୟକାର ଶ୍ରୀ ରାମଚନ୍ଦ୍ର ମିଶ୍ର, ସାହିତ୍ୟିକ ରାମ ପ୍ରସାଦ ସିଂ, ବେଦାନ୍ତାଳଙ୍କାର ପଣ୍ଡିତ ଗଣେଶ୍ୱର ରଥ, ଗାୟକ ପରମାନନ୍ଦ ଶରଣଙ୍କ ଜୀବନୀ ଉପରେ ଆଲୋକପାତ କରାଯାଇଛି ।

୧୯୮୧ – **'ସପ୍ତ ଜ୍ୟୋତି'** ସଂକଳନରେ ନାଟ୍ୟକାର ଗୋପାଳ ଛୋଟରାୟ, ସମାଜସେବୀ ନନ୍ଦକିଶୋର ଦାସ, ଇତିହାସବେତ୍ତା ଡଃ ନବୀନ କୁମାର ସାହୁ, ଗବେଷକ ସୁଧାକର ପଟ୍ଟନାୟକ, ପ୍ରତ୍ନତତ୍ତ୍ୱବିତ୍ କେଦାରନାଥ ମହାପାତ୍ର, ଶିଳ୍ପୀଗୁରୁ ଜଗନ୍ନାଥ ମହାପାତ୍ର ଓ ନୃତ୍ୟଗୁରୁ ଭଗବାନ ସାହୁଙ୍କ ଜୀବନୀ ସ୍ଥାନ ପାଇଛି ।

୧୯୮୨ – **'ସପ୍ତ ପୁଷ୍ପ'** ସଂକଳନରେ ରସିକରାଜ କବି ଫତୁରାନନ୍ଦ, ପାଲା ଗାୟକ ନିରଞ୍ଜନ କର, ମଞ୍ଚଗୁରୁ ଦୁର୍ଲ୍ଲଭ ଚନ୍ଦ୍ର ସିଂ, ଶିଳ୍ପୀ ଶିରୋମଣି ଶ୍ରୀଧର ମହାପାତ୍ର, ବାଣୀ ବରପୁତ୍ର ରାମକୃଷ୍ଣ ନନ୍ଦ, ଚଳନ୍ତି ଚରକ କବିରାଜ ଅନନ୍ତ ତ୍ରିପାଠୀ ଶର୍ମା ଓ ସମାଜସେବକ ପଦ୍ମଶ୍ରୀ ମୋହନ ନାୟକଙ୍କ ଜୀବନୀ ଓ ସାଧନା ସ୍ଥାନିତ ହୋଇଛି ।

୧୯୮୩ – **'ସପ୍ତରାଗ'** ସଂକଳନରେ ଭାଷାବିଜ୍ଞାନୀ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ, ଜନସେବୀ ଲମ୍ବୋଦର ପାଣିଗ୍ରାହୀ, କବି ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ, ଉତ୍କଳବନ୍ଧୁ ପି.ଭି. କୃଷ୍ଣମୂର୍ତ୍ତି, ସୃଜନଶୀଳ ନାଟ୍ୟକାର ମନୋରଞ୍ଜନ ଦାସ, ସ୍ଥାପତ୍ୟଶିଳ୍ପୀ ଭୁବନେଶ୍ୱର ମହାପାତ୍ର ଓ ଛଉନୃତ୍ୟଗୁରୁ ଅନନ୍ତ ଚରଣ ସାୟଙ୍କ ଜୀବନୀ ଓ କୃତି ଉପରେ ଆଲୋକପାତ କରାଯାଇଛି ।

୧୯୮୪ – **'ସପ୍ତ ସୁମନ'** ସଂକଳନରେ ସାହିତ୍ୟ ସାଧକ ଡଃ ଭୁବନେଶ୍ୱର ବେହେରା, ନାଟ୍ୟକାର ଭଞ୍ଜକିଶୋର ପଟ୍ଟନାୟକ, ଜନସେବୀ ଡାକ୍ତର ଶରତ ଚନ୍ଦ୍ର ମିଶ୍ର, ମଞ୍ଚଶ୍ରୀ ସତ୍ୟନାରାୟଣ ପଣ୍ଡା, ସଙ୍ଗୀତଗୁରୁ କ୍ଷିତୀଶ ମୈତ୍ର, ଗବେଷକ ଡକ୍ଟର ନଟବର ସାମନ୍ତରାୟ, ଛଉନୃତ୍ୟଗୁରୁ ପଦ୍ମଶ୍ରୀ କେଦାରନାଥ ସାହୁଙ୍କ ଜୀବନୀ ଓ କୃତି ସ୍ଥାନ ପାଇଛି ।

୧୯୮୫ – **'ସପ୍ତ ସ୍ତବକ'** ପୁସ୍ତକରେ ସଂଗଠକ ବାବୁଲାଲ ଦୋଶୀ, କଳାକାର ବାଞ୍ଛାନିଧି ଶତପଥୀ, ସାହିତ୍ୟିକ ଅନନ୍ତ ପ୍ରସାଦ ପଣ୍ଡା, ଗବେଷକ ବିନୋଦ କାନୁନ୍‌ଗୋ, ସଙ୍ଗୀତସାଧକ ଭୁବନେଶ୍ୱର ମିଶ୍ର, ଚିତ୍ରଶିଳ୍ପୀ ଲକ୍ଷ୍ମୀନାରାୟଣ ଆଚାରୀ, ହାସ୍ୟସ୍ରଷ୍ଟା କବି ବସନ୍ତ କୁମାର ଶତପଥୀଙ୍କ ଜୀବନୀ ପ୍ରଦତ୍ତ ।

୧୯୮୬ – **'ସପ୍ତ ତରଙ୍ଗ'** ପୁସ୍ତକରେ ସ୍ଥାନଲାଭ କରିଥିଲା ଐତିହାସିକ ଡକ୍ଟର ମନ୍ମଥନାଥ ଦାସ, ନାଟ୍ୟକାର ରଘୁନାଥ ପଣ୍ଡା, ସଙ୍ଗୀତ ଶିଳ୍ପୀ ମାର୍କଣ୍ଡେୟ ମହାପାତ୍ର, ସମାଜସେବୀ ଶ୍ୟାମସୁନ୍ଦର ମିଶ୍ର, ନୃତ୍ୟଗୁରୁ ପଙ୍କଜ ଚରଣ ଦାସ, କବି ଅନନ୍ତ ପଟ୍ଟନାୟକ ଓ ସଂଗଠକ ସଂଗ୍ରାହକ ଦାଶରଥି ପଟ୍ଟନାୟକଙ୍କ ଜୀବନୀ ।

. ୧୯୮୭ – **'ସପ୍ତ ପ୍ରଭା'** ସଂକଳନରେ ସାହିତ୍ୟିକ ଅନୁପ ସିଂହଦେଓ, ଗବେଷକ ଡଃ ବଂଶୀଧର ମହାନ୍ତି, ବୈଜ୍ଞାନିକ ଡକ୍ଟର ଗୋକୁଳାନନ୍ଦ ମହାପାତ୍ର, ନୃତ୍ୟଶିଳ୍ପୀ ଡଃ ପ୍ରିୟମ୍ବଦା ମହାନ୍ତି (ହେଜ୍‌ମାଦୀ), ସଙ୍ଗୀତଶିଳ୍ପୀ କାଶୀନାଥ ପୂଜାପଣ୍ଡା, ଚିତ୍ରଶିଳ୍ପୀ ଅସୀତ୍ ମୁଖାର୍ଜୀ ଏବଂ ଔପନ୍ୟାସିକ ତଥା ପ୍ରକାଶକ ଶୁକଦେବ ସାହୁଙ୍କ ଜୀବନୀ ସ୍ଥାନ ପାଇଥିଲା ।

୧୯୮୮ – **'ସପ୍ତ ଧାରା'** ପୁସ୍ତକରେ ପଣ୍ଡିତ ଚିନ୍ତାମଣି ମିଶ୍ର, କବି କୃଷ୍ଣଚନ୍ଦ୍ର ତ୍ରିପାଠୀ, ଅଭିନେତ୍ରୀ ମଣିମାଳା ଦେବୀ, ଗବେଷକ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା, ନୃତ୍ୟଶିଳ୍ପୀ ଶ୍ରୀମତୀ ସଂଯୁକ୍ତା ପାଣିଗ୍ରାହୀ, ସମାଜସେବୀ ଶ୍ରୀମତୀ ରମ୍ଭା ଦେବୀ ଓ ସୁଲଳିତ ଶାସ୍ତ୍ରୀୟ ସଙ୍ଗୀତ ଗାୟିକା ଶ୍ରୀମତୀ ବୀଣାପାଣି ମିଶ୍ରଙ୍କ ଜୀବନୀ ସ୍ଥାନ ପାଇଥିଲା ।

୧୯୮୯ – **'ସପ୍ତ ଶାଖା'** ପୁସ୍ତକରେ ସାହିତ୍ୟିକ ଡକ୍ଟର ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ), ସଙ୍ଗୀତଶିଳ୍ପୀ ନୃସିଂହନାଥ ଖୁଣ୍ଟିଆ, ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର, ବାଦ୍ଯଶିଳ୍ପୀ ଶ୍ରୀ କୁଞ୍ଜବିହାରୀ ମେହେର, ସମାଜସେବୀ ଶ୍ରୀ ମନମୋହନ ଚୌଧୁରୀ, ସ୍ଥପତି ଶ୍ରୀ ବିପ୍ରଚରଣ ମହାନ୍ତି ଓ ଅଭିନେତା ଶ୍ରୀ ପ୍ରିୟନାଥ ମିଶ୍ର (ପୀର)ଙ୍କ ଜୀବନୀ ସ୍ଥାନ ପାଇଛି ।

୧୯୯୦ – **'ସପ୍ତ ତାରକା'** ପୁସ୍ତକରେ ଗବେଷକ, କବି ଓ ଶିଳ୍ପୀ ଶ୍ରୀ ବିନୋଦ ରାଉତରାୟ, ଅଭିନେତା ଦୁଃଖୀରାମ ସ୍ୱାଇଁ, ନୃତ୍ୟଗୁରୁ ରଘୁନାଥ ଦତ୍ତ, ସଙ୍ଗୀତ ସାଧକ ସୁକୁମାର ସାହୁ, ବିପ୍ଳବୀ କବି ମନମୋହନ ମିଶ୍ର, ସାହିତ୍ୟିକ ରାଜକିଶୋର ପଟ୍ଟନାୟକ ଓ ପ୍ରକାଶକ ପୀତାମ୍ବର ମିଶ୍ରଙ୍କ ଜୀବନୀ ଓ କୃତି ସ୍ଥାନ ପାଇଛି ।

୧୯୯୧ – **'ସପ୍ତ ସୌରଭ'** ପୁସ୍ତକରେ ଯେଉଁ ମହାନ୍ ବ୍ୟକ୍ତିମାନଙ୍କ ଜୀବନୀ ସ୍ଥାନ ପାଇଥିଲା, ସେମାନେ ହେଲେ ସାମ୍ବାଦିକ ଯୁଗଳ କିଶୋର ପାଣିଗ୍ରାହୀ, ଗାଳ୍ପିକ ରାଜକିଶୋର ରାୟ, ଅଭିନେତା ବ୍ୟୋମକେଶ ତ୍ରିପାଠୀ, ଗବେଷକ କେଶବଚନ୍ଦ୍ର ମେହେର, କଳାକାର କୋହ୍ଲ ଚରଣ ସାହୁ, ସମାଜସେବୀ ପାର୍ବତୀ ଗିରି ଏବଂ ପ୍ରକାଶକ ରାଧାଶ୍ୟାମ ମହାନ୍ତି ।

୧୯୯୨ – **'ସପ୍ତ ସାଧକ'** ପୁସ୍ତକ ପ୍ରକାଶ ଲାଭ କରିଥିଲା । ଏହି ପୁସ୍ତକରେ ଯେଉଁ ମହାନ୍ ବ୍ୟକ୍ତିମାନଙ୍କର ଜୀବନୀ ସଂକଳିତ ହୋଇଛି ସେମାନେ ହେଲେ- କବି ଡଃ ବିନୋଦ ଚନ୍ଦ୍ର ନାୟକ, ନାଟ୍ୟକାର ପ୍ରାଣବନ୍ଧୁ କର, ସଂସ୍କୃତ ଭାଷାବିତ୍ ଜନସେବୀ କବିରାଜ ପଣ୍ଡିତ କୃଷ୍ଣଚନ୍ଦ୍ର ତ୍ରିପାଠୀଶର୍ମା, ଅଭିନେତା ଦୀନବନ୍ଧୁ ଦାସ (ଟିମା), ସଙ୍ଗୀତ ପ୍ରବୀଣ ନିତାଇ ଚରଣ ସିହ୍ନା, ସାମ୍ବାଦିକ ରାମଚନ୍ଦ୍ର ଦାଶ ଏବଂ ପ୍ରକାଶକ ସହଦେବ ପ୍ରଧାନ ।

୧୯୯୩ – **'ସପ୍ତ ଗୌରବ'** ପୁସ୍ତକରେ ଯେଉଁ ମହାନ୍ ବ୍ୟକ୍ତିମାନଙ୍କର ଜୀବନୀ ସଂକଳିତ ହୋଇଛି ସେମାନେ ହେଲେ- ସବୁଜ ଯୁଗର ସାହିତ୍ୟିକ ହରିଶ୍ଚନ୍ଦ୍ର ବଡ଼ାଲ, ଗବେଷକ ଡଃ ବେଣୀମାଧବ ପାଢ଼ୀ, ଯନ୍ତ୍ରସଙ୍ଗୀତ ଶିଳ୍ପୀ ଭକ୍ତବତ୍ସଳ ପାତ୍ର, ଚିତ୍ରଶିଳ୍ପୀ ଅଜିତ କେଶରୀ ରାୟ, ପଲ୍ଲୀକବି ଗୋଲକ ଚନ୍ଦ୍ର ପ୍ରଧାନ, ଅଭିନେତା ନିରଞ୍ଜନ ଶତପଥୀ ଓ ନୃତ୍ୟଗୁରୁ ମାୟାଧର ରାଉତ ।

୧୯୯୪ – **'ସପ୍ତର୍ଷି'** ପୁସ୍ତକରେ ଯେଉଁ ପ୍ରତିଭାଧର ବ୍ୟକ୍ତିମାନଙ୍କର ଜୀବନୀ ସ୍ଥାନ ପାଇଛି ସେମାନେ ହେଲେ- ସାହିତ୍ୟିକ ଲକ୍ଷ୍ମୀଧର ନାୟକ, ଗବେଷକ ଡଃ ଗଙ୍ଗାଧର ବଳ, ଉପାନ୍ତ ଅଞ୍ଚଳର ସାହିତ୍ୟ ସାଧକ ପ୍ରୟାଗଦତ୍ତ ଯୋଷୀ, ଚିତ୍ରଶିଳ୍ପୀ ଏବଂ ଜନସେବୀ ନବକିଶୋର ପଟ୍ଟନାୟକ, ସାମ୍ବାଦିକ ରଘୁନାଥ ପାଠୀଶାସ୍ତ୍ରୀ, ଅଭିନେତା ଶରତ ଚନ୍ଦ୍ର ପୂଜାରୀ ଏବଂ ପ୍ରକାଶକ ଅଭିରାମ ମହାପାତ୍ର ।

୧୯୯୫ – **'ଅଷ୍ଟରତ୍ନ'** ପୁସ୍ତକରେ ଯେଉଁ ପ୍ରତିଭାଧର ବ୍ୟକ୍ତିମାନଙ୍କ ଜୀବନୀ ସ୍ଥାନିତ ହୋଇଛି, ସେମାନେ ହେଲେ- ଗବେଷକ ପଠାଣି ପଟ୍ଟନାୟକ, କବି ଓ ଗାଳ୍ପିକ ଦୁର୍ଗାମାଧବ ମିଶ୍ର, ଜନସେବୀ ଓ ସଂଗଠକ ବସନ୍ତ କୁମାର ପାଣିଗ୍ରାହୀ, ସୁସାହିତ୍ୟିକ ଓ ସଙ୍ଗୀତଶିଳ୍ପୀ ଶ୍ରୀମତୀ ବୀଣା ଦେବୀ, ଅଭିନେତା ନଟବର ସେଣ, ଚିତ୍ରଶିଳ୍ପୀ ଉଦୟ ନାରାୟଣ ଜେନା, ଝୁମର ଓ ଛଉନୃତ୍ୟ ବିଶାରଦ ଗିରୀଶଚନ୍ଦ୍ର ମହାନ୍ତି ଓ ଔପନ୍ୟାସିକ ଶାନ୍ତନୁ କୁମାର ଆଚାର୍ଯ୍ୟ ।

୧୯୯୬ – **'ସପ୍ତ ସିନ୍ଧୁ'** ପୁସ୍ତକରେ ଗାଳ୍ପିକ ଓ ଔପନ୍ୟାସିକ କିଶୋରୀ ଚରଣ ଦାସ, ନୃତ୍ୟଶିଳ୍ପୀ ଧୀରେନ୍ଦ୍ର ନାଥ ପଟ୍ଟନାୟକ, ସଙ୍ଗୀତ ଶିଳ୍ପୀ ଶ୍ରୀମତୀ ବୀଣାପାଣି ମହାନ୍ତି, ଅଭିନେତା ଗୋବିନ୍ଦ ତେଜ, ଚିତ୍ରଶିଳ୍ପୀ ସୁନାମଣି ସାମଲ, ପାଲା ଗାୟକ ଜଗନ୍ନାଥ ବେହେରା ଓ ବେଣୁଧର ରାଉତଙ୍କ ଜୀବନୀ ପ୍ରକାଶିତ ।

୧୯୯୭ – **'ଆମ ସ୍ମରଣୀୟ ପ୍ରତିଭା'**ରେ ସ୍ଥାନିତ ପ୍ରତିଭାଧର ବ୍ୟକ୍ତିମାନେ ହେଲେ- ସାହିତ୍ୟିକ ସାତକଡ଼ି ହୋତା, ଗବେଷକ ଡଃ ଅସିତ କବି, ସଂଗଠକ ଗିରିଜା ଭୂଷଣ ପଟ୍ଟନାୟକ, ପଲ୍ଲୀକବି ମଦନ ମୋହନ ମିଶ୍ର, ସଙ୍ଗୀତ ଶିଳ୍ପୀ ପଣ୍ଡିମେଶ୍ୱର ଜେନା, ଅଭିନେତା ହେମନ୍ତ କୁମାର ଦାସ, ପ୍ରକୃତି ବନ୍ଧୁ ସୁଭାଷ ଚନ୍ଦ୍ର ସିଂ ଓ ପ୍ରକାଶକ ଶ୍ରୀ ଗୋବିନ୍ଦ ଚରଣ ପାତ୍ର ।

୧୯୯୮ – **'ଉତ୍କଳଶ୍ରୀ'** ଜୀବନୀ ପୁସ୍ତକରେ ଯେଉଁ ପ୍ରତିଭାଧର ବ୍ୟକ୍ତିମାନଙ୍କର ଜୀବନୀ ପ୍ରକାଶ ପାଇଛି ସେମାନେ ହେଲେ- ସାହିତ୍ୟିକ ମହାପାତ୍ର ନୀଳମଣି ସାହୁ, ସମାଲୋଚକ ଓ ଗବେଷକ ଡକ୍ଟର କୃଷ୍ଣଚରଣ ବେହେରା, ସାହିତ୍ୟିକ ଓ ସାମ୍ବାଦିକ ରଜନୀକାନ୍ତ ଦାସ, ସଙ୍ଗୀତ ଶିଳ୍ପୀ ଭିକାରୀ ଚରଣ ବଳ, ନୃତ୍ୟଶିଳ୍ପୀ ମାଗୁଣି ଚରଣ ଦାସ,

ହରିକଥା ପରିବେଷକ ଗଙ୍ଗସାଗର ଲଡୁକିଶୋର ପାଣି ଓ ଐତିହାସିକ ଡକ୍ଟର ଜଗନ୍ନାଥ ପଟ୍ଟନାୟକ ।

୧୯୯୯ – ମସିହାରେ ପ୍ରକାଶିତ **'ଓଡ଼ିଶାର ବରପୁତ୍ର'** ପୁସ୍ତକରେ ବରପୁତ୍ର ଅର୍ଥଶାସ୍ତ୍ରବିତ୍ ଡଃ ଦେବେନ୍ଦ୍ର ଚନ୍ଦ୍ର ମିଶ୍ର, ସୁସାହିତ୍ୟିକ ଓ ଗାଳ୍ପିକ ଶ୍ରୀ ଅଚ୍ୟୁତାନନ୍ଦ ପତି, ପ୍ରବୀଣ ସମାଲୋଚକ ଓ ଗବେଷକ ଡଃ ବିଚିତ୍ରାନନ୍ଦ ମହାନ୍ତି, ସୁସାମ୍ବାଦିକ ଓ ସାହିତ୍ୟିକ ପ୍ରଫେସର ଚିନ୍ତାମଣି ମହାପାତ୍ର, ଅଭିନୟ ନିପୁଣା ଶ୍ରୀମତୀ ଗ୍ଲୋରିଆ ମହାନ୍ତି, ପ୍ରବୀଣ ପ୍ରକାଶକ ଓ ଅନୁବାଦକ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଦାସ, ଓ ପଲ୍ଲୀକବି ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ଇତ୍ୟାଦିଙ୍କ ଜୀବନୀ ସ୍ଥାନିତ ହୋଇଛି ।

୨୦୦୦ – **'ସପ୍ତ-ସାଗର'** ପୁସ୍ତକରେ ଐତିହାସିକ ଗବେଷକ ଡଃ କରୁଣାକର ବେହେରା, ଅର୍ଥନୀତିଜ୍ଞ ଡକ୍ଟର ବୈଦ୍ୟନାଥ ମିଶ୍ର, ଔପନ୍ୟାସିକ ବଳରାମ ପଟ୍ଟନାୟକ, ନୃତ୍ୟଗୁରୁ ଗଙ୍ଗାଧର ପ୍ରଧାନ, ପ୍ରଖ୍ୟାତ ସଙ୍ଗୀତ ଶିଳ୍ପୀ ଶାନ୍ତନୁ ମହାପାତ୍ର, ସୁପ୍ରସିଦ୍ଧ ସମାଲୋଚକ ଡଃ କାହ୍ନୁ ଚରଣ ମିଶ୍ର ଏବଂ ଅଭିନେତା ଓ ଶିଳ୍ପୀ କୃଷ୍ଣଚନ୍ଦ୍ର ରଥଙ୍କ ଜୀବନୀ ପ୍ରକାଶିତ ହୋଇଛି ।

୨୦୦୧ – **'ସାରସ୍ଵତ ସାଧକ'** ପୁସ୍ତକରେ ପ୍ରକାଶିତ ପ୍ରତିଭାଧର ବ୍ୟକ୍ତିମାନଙ୍କ ମଧ୍ୟରେ ପ୍ରବୀଣ ଶିକ୍ଷାବିତ୍, ସୁସାହିତ୍ୟିକ ଶ୍ରୀ ଗୌରୀକୁମାର ବ୍ରହ୍ମା, ଭାଷାବିଜ୍ଞାନୀ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ, ସୁସାହିତ୍ୟିକ, ବରେଣ୍ୟ ଜନସେବୀ ଶ୍ରୀ ହରିହର ବାହିନୀପତି, ଇଂଜିନିୟର ଶ୍ରୀ ରାଜେନ୍ଦ୍ର ନାରାୟଣ ଦାସ, ନାଟ୍ୟକାର ଶ୍ରୀ ସାରଦା ପ୍ରସନ୍ନ ନାୟକ, ସଙ୍ଗୀତ ଶିଳ୍ପୀ ଶ୍ରୀ ରଘୁନାଥ ପାଣିଗ୍ରାହୀ, ଶିଶୁ ସାହିତ୍ୟିକ ଶ୍ରୀ ବାସୁଦେବ ମହାପାତ୍ର ଏବଂ ସାଂସ୍କୃତିକ ସଂଗଠକ ଶ୍ରୀ ସତ୍ୟନାରାୟଣ ଅଗ୍ରୱାଲଙ୍କ ଜୀବନୀ ପ୍ରକାଶିତ ।

୨୦୦୨ – ମସିହାରେ ପ୍ରକାଶିତ **'ସପ୍ତ ପ୍ରତିଭା'** ପୁସ୍ତକରେ ସାହିତ୍ୟିକ ଚିନ୍ତାମଣି ବେହେରା, ଗବେଷକ ଡକ୍ଟର ନରେନ୍ଦ୍ରନାଥ ମିଶ୍ର, ଜନସେବୀ ଅନ୍ନପୂର୍ଣ୍ଣା ମହାରଣା, ଶିଶୁ ସାହିତ୍ୟିକ ରାମ ପ୍ରସାଦ ମହାନ୍ତି, ସଙ୍ଗୀତଜ୍ଞ ଦାମୋଦର ହୋତା, ସଂଗଠକ ଖଟାଉ ସୁନ୍ଦର ଦାସ ଏବଂ ସାମ୍ବାଦିକ ଗୋପାଳ ମିଶ୍ରଙ୍କ ଜୀବନୀ ପ୍ରକାଶିତ ।

୨୦୦୩ – ମସିହାରେ **'ସାରସ୍ଵତ ସପ୍ତକ'** ପୁସ୍ତକରେ ଔପନ୍ୟାସିକ ବିଭୂତି ପଟ୍ଟନାୟକ, ଶିକ୍ଷାବିତ୍ ଶତ୍ରୁଘ୍ନ ନାଥ, ଗବେଷକ ଧନେଶ୍ଵର ମହାପାତ୍ର, ହାସ୍ୟ ଅଭିନେତା ଜୟୀରାମ ସାମଲ, ଓଡ଼ିଶୀ ସଙ୍ଗୀତ ବିଶାରଦ ଶ୍ୟାମାମଣି ଦେବୀ, 'ସମାଜ'ର ସମ୍ପାଦିକା ଶ୍ରୀମତୀ ମନୋରମା ମହାପାତ୍ର ଏବଂ ଶିଶୁ ସାହିତ୍ୟିକ ଶ୍ରୀଯୁକ୍ତ ନଦୀୟା ବିହାରୀ ମହାନ୍ତିଙ୍କ ଜୀବନୀ ମୁଦ୍ରିତ ।

୨୦୦୪ – ମସିହାରେ **'ସପ୍ତ ସୁରଭି'** ପୁସ୍ତକରେ ପ୍ରାବନ୍ଧିକ ଚିତ୍ତରଞ୍ଜନ ଦାସ, ଶିକ୍ଷାବିତ୍ ଡଃ ରାଧାନାଥ ରଥ, ଚଳଚ୍ଚିତ୍ର ଅଭିନେତା ବିଜୟ ମହାନ୍ତି, ଓଡ଼ିଶୀ ନୃତ୍ୟଶିଳ୍ପୀ କୁମ୍‌କୁମ୍ ମହାନ୍ତି, ସାମ୍ବାଦିକ-କବି ଦଣ୍ଡପାଣି ମିଶ୍ର, ସଙ୍ଗୀତଜ୍ଞ ପ୍ରଫୁଲ୍ଲ କୁମାର ସିଂହଦେଓ ଏବଂ ବିଶିଷ୍ଟ ସମାଜସେବୀ ରବୀନ୍ଦ୍ର ନାଥ ଦାସଙ୍କ ଜୀବନୀ ପ୍ରକାଶିତ ହୋଇଛି ।

୨୦୦୫ – ମସିହାରେ **'ଅମୃତାଲୋକ'** ପୁସ୍ତକରେ ପ୍ରାବନ୍ଧିକ ଚନ୍ଦ୍ରଶେଖର ରଥ, ଗୀତିକାର ଗୁରୁକୃଷ୍ଣ ଗୋସ୍ୱାମୀ, କ୍ରୀଡ଼ାବିତ୍ ମିନତୀ ମହାପାତ୍ର, ଅଭିନେତା ଦେବୁ ବୋଷ, ଚିତ୍ରଶିଳ୍ପୀ ଶିବ ପାଣିଗ୍ରାହୀ, କଣ୍ଠଶିଳ୍ପୀ ଅତୀଶ୍ ମଜୁମଦାର ଏବଂ ସାମ୍ବାଦିକ ପ୍ରମୋଦ କୁମାର ମହାପାତ୍ରଙ୍କ ଜୀବନୀ ପ୍ରକାଶିତ ହୋଇଛି ।

୨୦୦୬ – ମସିହାରେ **'ସପ୍ତଚନ୍ଦ୍ରିକା'** ପୁସ୍ତକରେ ସାହିତ୍ୟିକ ଉମାଶଙ୍କର ପଣ୍ଡା, ଚଳଚ୍ଚିତ୍ର ଅଭିନେତା ପ୍ରଶାନ୍ତ ନନ୍ଦ, ଶିକ୍ଷକ ଶିବରାମ ରଥ, ମର୍ଦ୍ଦଳ ବାଦକ ବନମାଳୀ ମହାରଣା, ଚିତ୍ରଶିଳ୍ପୀ ଜଗଦ୍ଦୀଶ କାନୁନ୍‌ଗୋ, ଔପନ୍ୟାସିକା ଗାୟତ୍ରୀ ବସୁ ମଲ୍ଲିକ ଏବଂ ସାହିତ୍ୟିକ ଫକୀର ହରିଚନ୍ଦନଙ୍କ ଜୀବନୀ ପ୍ରକାଶିତ ହୋଇଛି ।

୨୦୦୭ – ମସିହାରେ **'ଚରିତାୟନ'** ପୁସ୍ତକରେ, ଗବେଷକ ଜିତାମିତ୍ର ପ୍ରସାଦ ସିଂହଦେଓ, ସମାଜସେବୀ ଡାକ୍ତର ରାଧାଦେବୀ, ଅଭିନେତା ଉତ୍ତମ ମହାନ୍ତି, ସାହିତ୍ୟିକ ବିନୋଦ ବିହାରୀ ଦାସ, ଡାକ୍ତର ସନାତନ ରଥ, ସଙ୍ଗୀତଜ୍ଞ ପ୍ରଫୁଲ୍ଲ କର, ସଂଗ୍ରାମୀ ଗୁରୁଚରଣ ପଟ୍ଟନାୟକ ଜୀବନୀ ପ୍ରକାଶିତ ହୋଇଛି ।

୨୦୦୮ - ମସିହାରେ **'ଜୀବନାମୃତ'** ପୁସ୍ତକରେ ସାହିତ୍ୟିକ ଦେବ୍ରାଜ ଲେଙ୍କା, କଣ୍ଠଶିଳ୍ପୀ ପ୍ରଣବ ପଟ୍ଟନାୟକ, ଗୀତିକବି ବିନୋଦିନୀ ଦେବୀ, ଗାଳ୍ପିକା ବୀଣାପାଣି ମହାନ୍ତି, ଅଭିନେତ୍ରୀ ଝରଣା ଦାସ, ସାମ୍ବାଦିକ ମହେଶ୍ୱର ମୂଳିଆ ଏବଂ ଔପନ୍ୟାସିକ ଯମେଶ୍ୱର ତ୍ରିପାଠୀଙ୍କ ଜୀବନୀ ସ୍ଥାନିତ ହୋଇଛି ।

୨୦୦୯ - ମସିହାରେ **'ଚରିତ ଚିତ୍ରୋତ୍ପଳା'** ପୁସ୍ତକରେ ସାରସ୍ୱତ ସାଧକ ପଦ୍ମଶ୍ରୀ ଡଃ ଶ୍ରୀନିବାସ ଉଦ୍‌ଗାତା, ସମାଲୋଚକ ଗବେଷକ ଡଃ ସୁଦର୍ଶନ ଆଚାର୍ଯ୍ୟ, କଣ୍ଠଶିଳ୍ପୀ ସିକନ୍ଦର ଆଲାମ, ସମ୍ବାଦପତ୍ର ପ୍ରତିଷ୍ଠାତା ସୌମ୍ୟରଞ୍ଜନ ପଟ୍ଟନାୟକ, କ୍ରୀଡ଼ାବିତ୍ ଉଷାରାଣୀ ମିଶ୍ର (ଲେସ୍‌ଲୀ) ଶିଶୁ ସାହିତ୍ୟିକ ଜଗନ୍ନାଥ ମହାନ୍ତି ଏବଂ ଚଳଚ୍ଚିତ୍ର ଅଭିନେତା ହର ପଟ୍ଟନାୟକଙ୍କ ଜୀବନୀ ସ୍ଥାନିତ ହୋଇଛି ।

୨୦୧୦ - ମସିହାରେ **'ଜୀବନ ସୁବର୍ଣ୍ଣରେଖା'** ପୁସ୍ତକରେ ନାଟ୍ୟକାର ବିଜୟ ମିଶ୍ର, ସଂଗୀତ ସାଧିକା ଆରତୀ ମିଶ୍ର, ଚଳଚ୍ଚିତ୍ର ଅଭିନେତା ଅଜିତ୍ ଦାସ, କବି ଡଃ ଶରତ ଚନ୍ଦ୍ର ପ୍ରଧାନ, ସାହିତ୍ୟିକ ହରପ୍ରସାଦ ଦାସ, ଔପନ୍ୟାସିକା ପ୍ରତିଭା ରାୟ, ରାଜନୀତିଜ୍ଞ ଶେଖ୍ ମତ୍‌ଲୁବ୍ ଅଲ୍ଲୀଙ୍କ ଜୀବନୀ ସ୍ଥାନିତ ହୋଇଛି ।

୨୦୧୧ - ମସିହାରେ 'ଚରିତ ଶାବରୀ' ପୁସ୍ତକରେ ରାଜନୀତିଜ୍ଞ ଡକ୍ଟର ଗିରିଧର ଗମାଙ୍ଗ, କଥାଶିଳ୍ପୀ ରାମଚନ୍ଦ୍ର ବେହେରା, ପ୍ରାବନ୍ଧିକ ଡକ୍ଟର ହେମନ୍ତ କୁମାର ଦାସ, ବିଜ୍ଞାନ ଲେଖକ ଡ଼କ୍ଟର ଦେବକାନ୍ତ ମିଶ୍ର, ସଂଗୀତ ସାଧକ ରାଖାଲ ମହାନ୍ତି, ଅଭିନେତ୍ରୀ ମହାଶ୍ୱେତା ରାୟ ଏବଂ ସାମ୍ବାଦିକ ଅରୁଣ କୁମାର ପଣ୍ଡାଙ୍କ ଜୀବନୀ ପ୍ରକାଶିତ ହୋଇଛି ।

୨୦୧୨- ମସିହାରେ 'ଜୀବନ ଭାର୍ଗବୀ' ପୁସ୍ତକରେ ପ୍ରଜାତନ୍ତ୍ରର ସମ୍ପାଦକ ଭର୍ତ୍ତୃହରି ମହତାବ, ଗୀତିକବି ନାରାୟଣ ପ୍ରସାଦ ସିଂହ, ପ୍ରାବନ୍ଧିକ ଡକ୍ଟର ବୈଷ୍ଣବ ଚରଣ ସାମଲ, ଓଡ଼ିଶୀ ନାଟ୍ୟଗୁରୁ ରମଣୀ ରଞ୍ଜନ, ଔପନ୍ୟାସିକା ବିଜୟିନୀ ଦାସ, କଣ୍ଠଶିଳ୍ପୀ ସରୂପା ଚକ୍ରବର୍ତ୍ତୀ ଓ ନାଟ୍ୟକାର ଅକ୍ଷୟ ମହାନ୍ତିଙ୍କ ଜୀବନୀ ପ୍ରକାଶିତ ହୋଇଛି ।

୨୦୧୩ - ମସିହାରେ 'ଜୀବନ ଋଷିକୂଲ୍ୟା' ପୁସ୍ତକରେ କବି ରମାକାନ୍ତ ରଥ, ସମାଜସେବୀ ବୈଷ୍ଣବ ପରିଡ଼ା, ଚେସ୍ ଖେଳାଳୀ ପବିତ୍ର ମହାନ୍ତି, ଡାକ୍ତର ଯଦୁନାଥ ପ୍ରସାଦ ଦାସ, ସାହିତ୍ୟିକା ଡକ୍ଟର ଅର୍ଚ୍ଚନା ନାୟକ, ଗୀତିକବି ଗୌର ପଟ୍ଟନାୟକ, ଗାୟକ ଶେଖର ଘୋଷ୍‌ଙ୍କ ଜୀବନୀ ପ୍ରକାଶିତ ହୋଇଛି ।

୨୦୧୪ - ମସିହାରେ 'ଜୀବନ ବୈତରଣୀ' ପୁସ୍ତକରେ ସମାଜସେବୀ ଆଲାଜାଙ୍ଗି ବୀରଭଦ୍ର ସାମୀ, ସାହିତ୍ୟିକ ଡକ୍ଟର ନିତ୍ୟାନନ୍ଦ ଶତ଼ପଥୀ, ଡକ୍ଟର ସୁଲୋଚନା ଦାସ, କବି ଅମରେଶ ପଟ୍ଟନାୟକ, ଓଡ଼ିଶୀ ନୃତ୍ୟଗୁରୁ ଗୋପୀକୃଷ୍ଣ ବେହେରା, କଣ୍ଠଶିଳ୍ପୀ ଶ୍ରୀମତୀ ଗୀତା ପଟ୍ଟନାୟକ ଓ ଅଭିନେତା ଶ୍ୟାମଳେନ୍ଦୁ ଭଟ୍ଟାଚାର୍ଯ୍ୟଙ୍କ ଜୀବନୀ ସ୍ଥାନିତ ହୋଇଛି ।

ଓଡ଼ିଶାର ପ୍ରତିଭାଧର ବ୍ୟକ୍ତିମାନଙ୍କର, ସାଧକମାନଙ୍କର ବ୍ୟକ୍ତିଗତ ଜୀବନ ଏବଂ ସେମାନଙ୍କ କୃତିର କିଛି ପରିଚୟ ଛାପି ରଖିବାର ଏହା ଏକ ନିରବଚ୍ଛିନ୍ନ ପ୍ରୟାସ । ଏ ପ୍ରୟାସ ଆମ ଭବିଷ୍ୟତର ବଂଶଧରମାନଙ୍କ ନିକଟରେ ଏ ଜାତିର କୃତି ସନ୍ତାନମାନଙ୍କୁ କିଞ୍ଚିତ୍ ପରିଚିତ କରାଇବାରେ ସହାୟକ ହେବ ନିଶ୍ଚୟ ।

୧୯୭୦ରୁ ୨୦୧୫, ଏହି ୪୬ ବର୍ଷ ମଧ୍ୟରେ ଉତ୍କଳ ପାଠକ ସଂସଦ ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ଥିବା ଅନେକ ଇହଧାମ ତ୍ୟାଗ କରିଛନ୍ତି; ତଥାପି ପାଠକ ସଂସଦ ତା'ର କାର୍ଯ୍ୟଧାରା ଅବ୍ୟାହତ ରଖିଛି । ୨୦୧୫ ମସିହାରେ ପ୍ରକାଶକ ରାଧାଶ୍ୟାମ ମହାନ୍ତିଙ୍କ ବିୟୋଗ ଆମକୁ ଅନେକ ଦୁଃଖ ଦେଇଛି । ରାଧାଶ୍ୟାମ ମହାନ୍ତି ଏବଂ ଗୋବିନ୍ଦ ଚରଣ ପାତ୍ର ଏହି ଦୁଇ ପ୍ରକାଶକଙ୍କ ଆନ୍ତରିକ ସହଯୋଗ ପାଇଁ ହିଁ ଉତ୍କଳ ପାଠକ ସଂସଦ ଦୀର୍ଘ ବର୍ଷଧରି ଗ୍ରାମାଞ୍ଚଳରେ ପୁସ୍ତକ ପ୍ରଦର୍ଶନୀର ଆୟୋଜନ କରିବାରେ ସଫଳ ହୋଇପାରିଥିଲା । ସେ ସମୟରେ ଆଜିର ଦିନ ଭଳି ବଡ଼ ବଡ଼ ପୁସ୍ତକ ମେଳା ହେଉ ନ

ଥିଲା । ଗୋଟିଏ ଗାଁରେ ଉତ୍କଳ ପାଠକ ସଂସଦର ପୁସ୍ତକ ପ୍ରଦର୍ଶନୀ ଲୋକଙ୍କ ମନରେ କେତେ ଯେ ଉତ୍ସାହ ଭରି ଦେଉଥିଲା ତାହା ଅବର୍ଣ୍ଣନୀୟ । ଏହା ସମ୍ଭବ ହୋଇଥିଲା ସାଥିମହଲର ମାଲିକ ରାଧାଶ୍ୟାମ ମହାନ୍ତି ଏବଂ ଓଡ଼ିଶା ବୁକ୍ ଷ୍ଟୋର୍‌ର ମାଲିକ ଗୋବିନ୍ଦ ଚରଣ ପାତ୍ରଙ୍କ ପାଇଁ । ଏବେ ଏ ଦୁଇଜଣଯାକ ଆମକୁ ଛାଡ଼ି ଅମୃତପଥର ଯାତ୍ରୀ । ଏହି ବର୍ଷ ଇହଧାମ ତ୍ୟାଗ କରିଥିବା ରାଧାଶ୍ୟାମ ମହାନ୍ତିଙ୍କୁ ଉତ୍କଳ ପାଠକ ସଂସଦ ତା'ର ବିନମ୍ର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

୨୦୧୫ରେ ପୂର୍ବତନ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଦେହାନ୍ତ ଏବଂ ନେପାଳର ଭୂମିକମ୍ପ ମଧ୍ୟ ଆମକୁ ଅନେକ ଦୁଃଖ ଦେଇଛି । ଜାନକୀବାବୁ ଥିଲେ ଜଣେ ସାହିତ୍ୟପ୍ରାଣ ମଣିଷ । ଉତ୍କଳ ପାଠକ ସଂସଦର ମୁଖ୍ୟ ଅତିଥିଭାବରେ ଯୋଗଦେଇ ଏ ଅନୁଷ୍ଠାନକୁ ସେ ଯେଉଁ ଆଶୀର୍ବଚନ ପ୍ରଦାନ କରିଥିଲେ ତାହା ଏବେ ମଧ୍ୟ ଭୁଲି ନାହାନ୍ତି ପାଠକ ସଂସଦର କର୍ମକର୍ତ୍ତାଗଣ ।

ସାହିତ୍ୟ, ସଂସ୍କୃତିର ସୁରକ୍ଷା ତଥା ପ୍ରତିଭାପୂଜା ପାଇଁ ଉତ୍କଳ ପାଠକ ସଂସଦର ଏ ଉଦ୍ୟମ ଆଗାମୀ ଦିନରେ ଆହୁରି ସଫଳ ରୂପାୟନ ହେଉ । ଏହି ପ୍ରାର୍ଥନା ସହିତ ଅଗଣିତ ପାଠକ-ପାଠିକା ଏବଂ ସମାଜର ପ୍ରତ୍ୟେକ ସ୍ତରର ବ୍ୟକ୍ତିଙ୍କ ସ୍ନେହ, ସଦ୍‌ଭାବ, ସଦିଚ୍ଛା କାମନା କରି ରହୁଛୁ ।

**ସୁବ୍ରତ ପ୍ରିୟବ୍ରତ ମହାନ୍ତି**

ସମ୍ପାଦକ, ଉତ୍କଳ ପାଠକ ସଂସଦ

# ନିରଳସ ସ୍ରଷ୍ଟା
# ଡକ୍ଟର ଶ୍ରୀନିବାସ ମିଶ୍ର

**ଡକ୍ଟର ଶ୍ରୀଚରଣ ଦାସ**

ଡକ୍ଟର ଶ୍ରୀନିବାସ ମିଶ୍ର ଆମ ସମୟର ଅନୁବାଦ ସାହିତ୍ୟର ଏକ ପରିଚିତ ନାମ । ଆତ୍ମ ପ୍ରଚ୍ଚର ପ୍ରତି ବିମୁଖ, ନୀରବରେ ଅଧ୍ୟବସାୟ ସହ ଜୀବନୋନ୍ନତିର ଏକନିଷ୍ଠ ସାଧକ ଅଧ୍ୟାପକ ମିଶ୍ରଙ୍କ ଜନ୍ମସ୍ଥାନ ଅବିଭକ୍ତ କଟକ ଜିଲ୍ଲାର କେନ୍ଦ୍ରାପଡ଼ା ଉପଖଣ୍ଡ ଅନ୍ତର୍ଗତ ଆଳି ଥାନାର ଗୋବିନ୍ଦପୁର ନାମକ ଗ୍ରାମ । ଓଡ଼ିଶାର ଦ୍ୱିତୀୟ ବୃହତ୍ ନଦୀ ବ୍ରାହ୍ମଣୀର ଶାଖାନଦୀ ଖରସ୍ରୋତାକୂଳରେ ଗ୍ରାମର ଅବସ୍ଥିତି । ଗ୍ରାମଠାରୁ ଉଭୟ ନଦୀର ଦୂରତା ପ୍ରାୟ ଛଅ ମାଇଲ । ବର୍ଷାଋତୁରେ ଉଭୟ ବ୍ରାହ୍ମଣୀ ଓ ଖରସ୍ରୋତା କରାଳ ବନ୍ୟାର ପ୍ଳାବନରେ ଏକାକାର ହୋଇଯାନ୍ତି । ଜନସାଧାରଣଙ୍କ ଜୀବନଯାତ୍ରା ବ୍ୟାହତ, ବିଚ୍ଛିନ୍ନ ଓ କଷ୍ଟପ୍ରଦ ହୁଏ, ବିପୁଳ ଶସ୍ୟହାନୀ ଜନସାଧାରଣଙ୍କୁ ସର୍ବସାନ୍ତ କରେ । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ରାଜବନ୍ଦୀରୂପେ କଟକରୁ ବିହାରର ହଜାରୀବାଗ କାରାଗାରକୁ ରେଳପଥରେ ନିଆଯାଉଥିବା ବେଳେ ଯାଜପୁର ରୋଡ୍ ରେଳଷ୍ଟେସନ ପୂର୍ବରୁ ବ୍ରାହ୍ମଣୀନଦୀ ଉପରେ ଥିବା ରେଳ ପୋଲ ଅତିକ୍ରମ କରିବା ଅବସରରେ ସହାନୁଭୂତିସୂଚକ ନିଜ ପୂର୍ବ ସ୍ମୃତି ରୋମନ୍ଥନ କରି ଉକ୍ତ ନଦୀକୁ ସମ୍ବୋଧନ କରି ଲେଖିଥିଲେ–

ଖରସ୍ରୋତା ସଙ୍ଗେ କରି ତୁ ମନ୍ତ୍ରଣା
ତଟ ବାସୀ ଜନେ ନ ଦିଅ ଯନ୍ତ୍ରଣା

ପ୍ରଫେସର ମିଶ୍ରଙ୍କ ଗ୍ରାମ ଗୋବିନ୍ଦପୁରର ବନ୍ୟାପ୍ରପୀଡ଼ିତ ଲୋକଙ୍କ ଦାରୁଣ ଦୁଃଖରେ ସମଭାଗୀ ହେବା ନିମନ୍ତେ ଗୋପବନ୍ଧୁ ଆସିଥିବା ଶ୍ରୀ ମିଶ୍ର ବୟସ୍କ ଲୋକମାନଙ୍କ ମୁଖରୁ ଶୁଣିଛନ୍ତି । ଇତିହାସର ଘଟଣାବଳୀ ବିବେଚନାରୁ ଗ୍ରାମର ମଧ୍ୟ ଏକ ତାତ୍ପର୍ଯ୍ୟ ଅଛି ।

ଗ୍ରାମରେ ବ୍ରାହ୍ମଣ, କ୍ଷତ୍ରିୟ, ଜ୍ୟୋତିଷ, ନାପିତ, ରଜକ ଓ ହରିଜନଙ୍କ ଭଳି ବିଭିନ୍ନ ଜାତିର ଅଧିବାସୀଙ୍କ ଶନ୍ତିପୂର୍ଣ୍ଣ ବସତି । ସାମଲ ସଂଜ୍ଞାଧାରୀ କ୍ଷତ୍ରିୟମାନଙ୍କ ସଂଖ୍ୟା ଅଧିକ । ସେମାନେ ଯଥାସମ୍ଭବ ଅତୀତରେ ମାତୃଭୂମିର ସୁରକ୍ଷା ନିମନ୍ତେ ଗ୍ରାମୀଣ ସୈନ୍ୟବାହିନୀର ଅନ୍ତର୍ଭୁକ୍ତ ଥିଲେ । ଏ ପ୍ରସଙ୍ଗରେ ଗୋଦାବରୀଶ ମହାପାତ୍ରଙ୍କ 'ଉଠ କଙ୍କାଳ' କବିତାର ଧାଡ଼ିଟିଏ ମନେ ପଡ଼େ । ''ଖଣ୍ଡାକୁଶଳ ଖଣ୍ଡାୟତର ଦୁର୍ବାର କରବାଳେ, ଅଜେୟ ବଙ୍ଗବାହିନୀ ଶୋଇଲେ ଶତ ଗଡ଼ ପ୍ରାନ୍ତରେ ।'' ଏମାନଙ୍କ ମଧ୍ୟରୁ ଚୌଧୁରୀ ଉପାଧିଧାରୀ ଜଣେ ବ୍ୟକ୍ତିଙ୍କ ଘରେ ଦଶହରା ଉତ୍ସବ ଅବସରରେ ଖଣ୍ଡା, ତଲୱାର ପ୍ରଭୃତିର ପୂଜା ହେବା ଶ୍ରୀ ମିଶ୍ର ଦେଖିଛନ୍ତି । ଗ୍ରାମ ସଂପର୍କରେ ଦ୍ୱିତୀୟ ଘଟଣାଟି ହେଉଛି ଗ୍ରାମରେ କେତେକ ବଙ୍ଗୀୟ ପରିବାରର ଅବସ୍ଥିତି । ବ୍ରିଟିଶ ଶାସନର ଆରମ୍ଭରେ କଲିକତାର ଫୋର୍ଟ୍ ଉଇଲିୟମ୍‌ଠାରେ ନିର୍ଦ୍ଧାରିତ ସମୟରେ ଜମିଦାରୀର ପେସ୍‌କିସ୍ ଦାଖଲ କରିପାରି ନ ଥିବା ହେତୁ ବହୁ ଓଡ଼ିଆଙ୍କ ଜମିଦାରୀ ସହଜରେ ବଙ୍ଗୀୟମାନଙ୍କ ଅଧିକାରଭୁକ୍ତ ହୋଇଥିଲା । ଘଟଣାକ୍ରମେ ଗୋବିନ୍ଦପୁର ଗ୍ରାମରେ ଚାରିଗୋଟି ବଙ୍ଗୀୟ ପରିବାର ଆସି ବସବାସ କରିଥିଲେ । ସେମାନଙ୍କ ଜମିଦାରୀ ସାନ ହୋଇଥିବାରୁ ସେମାନେ ଗ୍ରାମବାସୀଙ୍କ ସହ ସୌହାର୍ଦ୍ଦ୍ୟ ରକ୍ଷାକରି ଚଳୁଥିଲେ । ସେଭଳି ଜମିଦାରଙ୍କ ମଧ୍ୟରୁ ଜଣେ କୁଂଜବିହାରୀ ବୋଷଙ୍କ ଜାମାତା କଟକବାସୀ ଓ 'ସମାଜ' ସମ୍ବାଦପତ୍ରର କଟକ ସହରର ପ୍ରତିନିଧି ଥିଲେ ସୁପରିଚିତ ଅଦ୍ୱୈତ ବଲ୍ଲଭ ରାୟ । ସେ ଗୋବିନ୍ଦପୁର ଗ୍ରାମର ହିତମୂଳକ କାର୍ଯ୍ୟସହ ବିଶେଷ ସଂପୃକ୍ତ ଥିଲେ । ତାଙ୍କ ପ୍ରଚେଷ୍ଟାରେ ଏ ଗ୍ରାମକୁ ମନ୍ତ୍ରୀ ପଣ୍ଡିତ ଗୋଦାବରୀଶ ମିଶ୍ର, ମନ୍ତ୍ରୀ ଓ ସମାଜ ସଂପାଦକ ଶ୍ରୀଯୁକ୍ତ ରାଧାନାଥ ରଥ ଓ 'ନିଆଁଖୁଣ୍ଟା' ସଂପାଦକ ଗୋଦାବରୀଶ ମହାପାତ୍ରଙ୍କ ଭଳି ଜନନେତାମାନେ ଆସିଥିଲେ । ସେମାନେ ଥିଲେ ଗ୍ରାମର ହିତକାମୀ ଓ ଜନସାଧରଣଙ୍କ ପ୍ରତି ସହାନୁଭୂତିଶୀଳ ।

ଗ୍ରାମର ଶିକ୍ଷା ନିମନ୍ତେ ଏକ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ, ସ୍ୱାସ୍ଥ୍ୟ ପାଇଁ ଦେଶୀୟ ଚିକିତ୍ସାଳୟ ଓ ସମ୍ବାଦ ବଣ୍ଟନ ପାଇଁ ଡାକଘର ଥିଲା । ଏଠାରେ ଶିକ୍ଷା ଲାଭକରି ଶ୍ରୀ ମିଶ୍ର ଉଚ୍ଚ ପ୍ରାଥମିକ ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇଥିଲେ । ସାଧାରଣତଃ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ଇଂରେଜୀ ଶିକ୍ଷାର କୌଣସି ବ୍ୟବସ୍ଥା ନ ଥାଏ । ମାତ୍ର ଘରୋଇଭାବେ ଜଣେ ବଙ୍ଗୀୟ ଯୁବକ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ଛାତ୍ରମାନଙ୍କୁ କିଛି ଇଂରେଜୀ ଶିକ୍ଷା ଦେଉଥିଲେ । ଫଳତଃ ଶ୍ରୀ ମିଶ୍ର ଉଚ୍ଚ ପ୍ରାଥମିକ ଶିକ୍ଷା ସମାପ୍ତି ପରେ ଗ୍ରାମଠାରୁ ଛଅ ମାଇଲ ଦୂରବର୍ତ୍ତୀ କଲ୍ୟାଣପୁର ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଷଷ୍ଠ ଶ୍ରେଣୀରେ ନାମ ଲେଖାଇଲେ; କିନ୍ତୁ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଦୁଇବର୍ଷ ପାଠପଢ଼ା କାଳ ମଧ୍ୟରେ ଶ୍ରୀ ମିଶ୍ର ପ୍ରଥମ ବର୍ଷ ଏକ ଦୁର୍ଘଟଣାଗ୍ରସ୍ତ ଓ ଶେଷବର୍ଷ ବସନ୍ତ ରୋଗ ପୀଡ଼ିତ ହୋଇ ଗ୍ରାମକୁ ଫେରା ହୋଇଥିଲେ ।

ତଥାପି ତାଙ୍କର ଅଧ୍ୟୟନ କୁଶଳତା ଓ ନିଷ୍ଠା ହେତୁ ସେ ମଧ୍ୟ ଇଂରାଜୀ ବିଦ୍ୟାଳୟର ଶେଷ ପରୀକ୍ଷାରେ କୃତିତ୍ୱସହ ଉତ୍ତୀର୍ଣ୍ଣ ହେଲେ ।

ଏହା ପରେ ମାଟ୍ରିକ ପରୀକ୍ଷାର ପାଠ୍ୟକ୍ରମ ଚାରିବର୍ଷ । ସେ କେନ୍ଦ୍ରାପଡ଼ା ହାଇସ୍କୁଲରେ ଆସି ନାମ ଲେଖାଇଲେ । ପ୍ରଥମେ ସହରର ନିକଟବର୍ତ୍ତୀ ଗ୍ରାମ ଗରାପୁରରେ ଦୁଇବର୍ଷ କାଳ କଷ୍ଟ ସହି ବିତିଗଲା ପରେ କେନ୍ଦ୍ରାପଡ଼ା ସହରର ଜଣେ ସଦାଶୟ ଆଇନ୍‌ଜୀବୀ ଶ୍ରୀଯୁକ୍ତ ମଦନମୋହନ ଦାସ ଦୟାପରବଶ ହୋଇ ତାଙ୍କୁ ନିଜ ବାସଗୃହରେ ଆଶ୍ରୟ ଦେଲେ । ତାଙ୍କ ନାତିମାନଙ୍କ ଗୃହ ଶିକ୍ଷକଭାବେ ଶ୍ରୀ ମିଶ୍ରଙ୍କ ସହପାଠୀ ଶ୍ରୀ ମୁରଲୀଧର ପାତ୍ର ତାଙ୍କ ବାସଗୃହରେ ରହୁଥାନ୍ତି । ସେ ବେଶ୍ ଉତ୍ତମ ଛାତ୍ର । ତେଣୁ ମାଟ୍ରିକ ପରୀକ୍ଷା ନିମନ୍ତେ ପ୍ରସ୍ତୁତ ହେବା ଶ୍ରୀ ମିଶ୍ରଙ୍କ ପକ୍ଷରେ ସୁବିଧାଜନକ ହେଲା । ସେ ଉଚ୍ଚ ଦ୍ୱିତୀୟ ଡିଭିଜନର ନମ୍ବର ରଖି ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ଏହା ହେଉଛି ୧୯୪୪ ମସିହାର ଘଟଣା । ସେତେବେଳେ ପୂର୍ବ ନିୟମ ଅନୁସାରେ ଓଡ଼ିଶାର ବିଦ୍ୟାଳୟଗୁଡ଼ିକର ମାଟ୍ରିକ ପରୀକ୍ଷା ପାଟଣା ବିଶ୍ୱବିଦ୍ୟାଳୟ ଦ୍ୱାରା ଆଉ ସମ୍ପନ୍ନ ନ ହୋଇ ନବ ପ୍ରତିଷ୍ଠିତ ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ୧୯୪୪ ମସିହା ଠାରୁ ପରିଚାଳିତ ହେଲା । ମିଶ୍ରଙ୍କ ସହଧ୍ୟାୟୀ ଛାତ୍ରମାନେ ଓ ସେ ନିଜେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇଥିବା ପ୍ରଥମ ପ୍ରବେଶିକା ପରୀକ୍ଷାର ଛାତ୍ର ।

ଏହା ପରେ କଲେଜରେ ପଢ଼ିବାର ସ୍ୱପ୍ନ; କିନ୍ତୁ ପରିବାରର ଆର୍ଥିକ ଦୁରବସ୍ଥା ସକଳ ଉଚ୍ଚାଶାର ପରିପନ୍ଥୀ ଥିଲା । ନିଜ ଗ୍ରାମ ଠାରୁ କିଛି ଦୂରବର୍ତ୍ତୀ ତମାଳ ଶାସନର ଜଣେ ଗ୍ରାମୀଣ ଡାକ୍ତର ଶ୍ରୀ ଘନଶ୍ୟାମ ମହାନ୍ତି । ଗ୍ରୀଷ୍ମଛୁଟି ହୋଇଥିବାରୁ ତାଙ୍କ ଭାଇ ଶ୍ରୀଯୁକ୍ତ ଜଗନ୍ନାଥ ମହାନ୍ତି ଗ୍ରାମରେ ଥାଆନ୍ତି । ସେ କଟକରେ ସରକାରୀ ବିଚାରାଳୟରେ ଜଣେ ବିଚାରପତି । ତାଙ୍କୁ ଅନୁରୋଧ କରିବାରୁ ସେ କହିଲେ ମୁଁ କଟକର ପ୍ରସିଦ୍ଧ ଆଇନ୍‌ଜୀବୀ ଚିନ୍ତାମଣି ଆଚାର୍ଯ୍ୟଙ୍କୁ ତୁମ ଲାଗି ଅନୁରୋଧ କରିବି । ସେ ଚିନ୍ତାମଣିବାବୁଙ୍କୁ ଶ୍ରୀ ମିଶ୍ରଙ୍କ ପାଇଁ ଅନୁରୋଧ କଲେ । ଚିନ୍ତାମଣିବାବୁଙ୍କ ପରାମର୍ଶ ହେଲା ତୁମେ ଏତେ ଦରିଦ୍ର ଛାତ୍ର । କଲେଜରେ ଚାରିବର୍ଷ ପଢ଼ି ବି.ଏ. ପାସ ନ କଲେ କୌଣସି ଭଲ ନିଯୁକ୍ତି ମିଳିବ ନାହିଁ । ତା ଅପେକ୍ଷା ବରଂ ଆମ ଘରେ ରହି ସରକାରୀ ଶିକ୍ଷା କେନ୍ଦ୍ରରେ ଟାଇପ୍ କରିବା ଓ କ୍ଷୀପ୍ରଲେଖନ ଶୈଳୀ ବର୍ଷକରେ ଆୟତ୍ତ କଲେ ତୁମ ନିଯୁକ୍ତି ଲାଗି ମୁଁ କିଛି ବ୍ୟବସ୍ଥା କରିବି । ଉକ୍ତ ପରାମର୍ଶ ଅନୁସାରେ ବର୍ଷେକାଳ ଉକ୍ତ ପାଠ୍ୟକ୍ରମ ସେ ଶେଷ କଲେ । ଏହି ସମୟରେ ଚିନ୍ତାମଣି ଆଚାର୍ଯ୍ୟଙ୍କ ଦ୍ୱିତୀୟ ପୁତ୍ର ଶ୍ରୀମାନ୍ କାଳୀପ୍ରସନ୍ନ ଷ୍ଟୁଆର୍ଟ ସ୍କୁଲରୁ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ତେଣୁ ଚିନ୍ତାମଣିବାବୁଙ୍କ ପରାମର୍ଶ ହେଲା ଦୁଇଜଣଯାକ ଆଇ.ଏ.

ଶ୍ରେଣୀରେ ରେଭେନ୍ସା କଲେଜରେ ନାମ ଲେଖାଅ । ତାଙ୍କ ଘରେ ରହି ସାନ ନାତି ଓ ନାତୁଣୀଙ୍କ ପଢ଼ାରେ ସହାୟକ ହୋଇ କଲେଜରେ ଆଇ.ଏ. ଶ୍ରେଣୀରେ ଶ୍ରୀ ମିଶ୍ର ନାମ ଲେଖାଇଲେ । ଆଇ.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସେ ବି.ଏ. ପାଠ୍ୟକ୍ରମରେ ନାମ ଲେଖାଇଲେ । ବାଧ୍ୟତାମୂଳକ ଇଂରେଜୀ, ଇଚ୍ଛାଧୀନ ଅର୍ଥନୀତି ଓ ମାତୃଭାଷା ଓଡ଼ିଆ ସହ ଓଡ଼ିଆରେ ଅନର୍ସ ତାଙ୍କ ପାଠ୍ୟ ବିଷୟ ଥିଲା । ଏହି ସମୟରେ କଟକରେ କେନ୍ଦ୍ର ସରକାରଙ୍କ ଏକ ପ୍ରତିଷ୍ଠାନ 'ଅଖିଳ ଭାରତ ବେତାର କେନ୍ଦ୍ର' ସ୍ଥାପିତ ହେଲା । ସେଠାରେ କାର୍ଯ୍ୟକ୍ରମ ସଂପାଦକ ପଦ ଲାଗି ବିଜ୍ଞପ୍ତି ପ୍ରକାଶିତ ହେଲା । ସେଥିଲାଗି ଯୋଗ୍ୟତା ହେଉଛି ପ୍ରାର୍ଥୀ ଆଇ.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବେ କିନ୍ତୁ ତାଙ୍କର ଟାଇପ୍ କରିବାର ଅଭିଜ୍ଞତା ଥିବ । ସାଧାରଣତଃ ପ୍ରାର୍ଥୀମାନେ ମାଟ୍ରିକ ପରେ ଟାଇପ୍ ଶିଖି କର୍ମ ନିଯୁକ୍ତ ହୁଅନ୍ତି । ଆଇ.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ଟାଇପ୍ ଅଭିଜ୍ଞ ପ୍ରାର୍ଥୀ ମିଳିବା ସହଜ ନୁହେଁ । କେନ୍ଦ୍ର ସରକାରୀ ଅନୁଷ୍ଠାନ ଅଖିଳ ଭାରତ ବେତାର କେନ୍ଦ୍ରରେ ସେ ଉପଯୁକ୍ତ ପ୍ରାର୍ଥୀରୂପେ ବିବେଚିତ ହୋଇ ନିଯୁକ୍ତିପତ୍ର ପାଇଲେ । ୧୯୪୮ ମସିହାରେ ଉକ୍ତ ପ୍ରାର୍ଥୀଙ୍କର ମୂଳ ବେତନ ୮୦ ଟଙ୍କା ଓ ମହଙ୍ଗା ଭତ୍ତା ୪୫ ଟଙ୍କା ମୋଟ ୧୨୫ ଟଙ୍କା ଥିଲା । ସେତେବେଳେ ଜଣକର ସ୍ୱଚ୍ଛନ୍ଦ ଚଳାଚଳ ଲାଗି ଏହି ଅର୍ଥ ଯଥେଷ୍ଟ । ତେଣୁ ଅଭାବମୁକ୍ତ ହୋଇ ଯଥାଯଥ ନିଷ୍ଠାସହ ନୂତନ ସ୍ଥାପିତ ବେତାର କେନ୍ଦ୍ରର କାର୍ଯ୍ୟ ଶ୍ରୀ ମିଶ୍ର ସଂପାଦନ କଲେ ।

ଜୁଲାଇ ମାସରେ ପ୍ରସଙ୍ଗ ହେଲା ବର୍ଷକର ପାଠପଢ଼ା ଅସମାପ୍ତ ରଖି ଜଣେ ଗ୍ରାଜୁଏଟ ବା ବି.ଏ. ଉପାଧିଧାରୀ ନ ହେଲେ ଜୀବନରେ ଉନ୍ନତିର ପଥ ଅବରୁଦ୍ଧ ହେବ । ତେଣୁ କଟକରେ ଉତ୍କଳ ଖ୍ରୀଷ୍ଟିଆନ କଲେଜରେ ନାମ ଲେଖାଇବା ନିମନ୍ତେ ତାଙ୍କର ଆଗ୍ରହ ହେଲା । ସେତେବେଳେ ଉତ୍କଳ ଖ୍ରୀଷ୍ଟିଆନ କଲେଜର ସ୍ୱତନ୍ତ୍ର ଶିକ୍ଷାୟତନ ଓ ଶ୍ରେଣୀଗୃହ ନ ଥିବାରୁ ଏହା ନିକଟବର୍ତ୍ତୀ ମିଶନ ସ୍କୁଲରେ ସକାଳବେଳା ପରିଚାଳିତ ହେଉଥାଏ । ଏଠାରୁ ନବ ସ୍ଥାପିତ ଓ ମଧୁପୁର କୋଠିରେ ପରିଚାଳିତ ହେଉଥିବା କଟକ ବେତାର କେନ୍ଦ୍ର ଅତ୍ୟନ୍ତ ନିକଟବର୍ତ୍ତୀ । ଜୁଲାଇ ମାସରେ ରେଭେନ୍ସାରୁ କଲେଜ ପରିବର୍ତ୍ତନ ଲାଗି ପ୍ରମାଣପତ୍ର ଆଣି ସେ ଉତ୍କଳ ଖ୍ରୀଷ୍ଟିଆନ କଲେଜରେ ଛାତ୍ରଭାବେ ନାମ ଲେଖାଇଲେ । ବି.ଏ. ଶେଷ ବର୍ଷରେ ଓଡ଼ିଆ ଅନର୍ସ ବିଷୟ ସହ ସେ ଇଚ୍ଛାଧୀନ ବିଷୟ ଅର୍ଥନୀତି ଅଧ୍ୟୟନ କଲେ । ସକାଳ ସାତଟାରେ କଲେଜର ପାଠ୍ୟକ୍ରମ ଆରମ୍ଭ ହୋଇ ପ୍ରାୟ ସାଢ଼େନଅଟା ବେଳେ ମୁଖ୍ୟ ବିଷୟ ଗୁଡ଼ିକର ଅଧ୍ୟାପନା ଶେଷ ହୁଏ । ତା'ପରେ ସନ୍ନିକଟବର୍ତ୍ତୀ ମଧୁପୁର କୋଠିରେ ବେତାର କେନ୍ଦ୍ରର କାର୍ଯ୍ୟାଳୟରେ ଶ୍ରୀ ମିଶ୍ରଙ୍କ ଯୋଗଦାନ । ନୂତନ ସ୍ଥାପିତ ବେତାର କେନ୍ଦ୍ରର କାର୍ଯ୍ୟଚାପ ଅଳ୍ପ ନ ଥିଲା । ଏହା ବରଂ ଥିଲା ଅତ୍ୟନ୍ତ ଦାୟିତ୍ୱପୂର୍ଣ୍ଣ । ତଥାପି ଉତ୍କଳ ଖ୍ରୀଷ୍ଟିଆନ

କଲେଜରେ ପ୍ରାକ୍-ନିର୍ବାଚନ ପରୀକ୍ଷାରେ ସନ୍ତୋଷଜନକ ଫଳ ପ୍ରଦର୍ଶନ କରି ଶ୍ରୀ ମିଶ୍ର ଓଡ଼ିଆ ଅନର୍ସକୁ ପାଠ୍ୟଭାବେ ରଖିବାକୁ ବିଭାଗୀୟ ମୁଖ୍ୟଙ୍କଠାରୁ ଅନୁମତି ପ୍ରାପ୍ତ ହେଲେ । ବି.ଏ. ଶେଷ ବର୍ଷର ପାଠ୍ୟ ପ୍ରସ୍ତୁତି ସହ ବେତାର କେନ୍ଦ୍ରର ଦାୟିତ୍ୱ ନିଷ୍ଠାସହ ସଂପାଦନ କରି ସେ ସମସ୍ତଙ୍କର ସ୍ନେହ ଓ ଆଦର ଯୋଗ୍ୟ କର୍ମୀ ହେଲେ । ଦୃଢ଼ ସଂକଳ୍ପବଦ୍ଧ ମନୋଭାବ ଓ ଅପେକ୍ଷିତ କର୍ମାନୁଷ୍ଠାନ ପ୍ରତି ବିଶ୍ୱସ୍ତତା ଓ ସତର୍କତା ହେତୁ ସେ ବେତାର କେନ୍ଦ୍ରରେ ଉପରିସ୍ଥ କର୍ମଚାରୀମାନଙ୍କ ସ୍ନେହଭାଜନ ହେବା ସଙ୍ଗେ ସଙ୍ଗେ ଓଡ଼ିଆ ଅନର୍ସ ପରୀକ୍ଷାରେ ମଧ ଉତ୍ତମ ଫଳ ପ୍ରଦର୍ଶନ କଲେ । ବେତାର କେନ୍ଦ୍ରର ବେତନ ପ୍ରାପ୍ତିରୁ କିଛି ସଞ୍ଚୟ ଓ ବି.ଏ. ଅନର୍ସରେ କୃତିତ୍ୱ ହେତୁ ସେ ବହୁ ବ୍ୟକ୍ତିଙ୍କ ଅସମ୍ମତି ସତ୍ୱେ ଓଡ଼ିଆରେ ଏମ୍.ଏ. ପଢ଼ିବାକୁ ଆଗ୍ରହୀ ହେଲେ । ଏମ୍.ଏ. ଶ୍ରେଣୀରେ କେତେଜଣ କୃତବିଦ୍ୟ ଯୁବକ ତାଙ୍କର ସହପାଠୀ ହେଲେ । ଗଳ୍ପ ଓ ରମ୍ୟରଚନା ଲେଖକ ମହାପାତ୍ର ନୀଳମଣି ସାହୁ, ପ୍ରବନ୍ଧ ଲେଖକ ପଠାଣି ପଟ୍ଟନାୟକ, ପଲ୍ଲୀକବିତା ରଚୟିତା ସତ୍ୟାନନ୍ଦ ଚମ୍ପତିରାୟ, 'ଝଙ୍କାର' ପତ୍ରିକା ପ୍ରକାଶନର ସହଯୋଗୀ ଚକ୍ରଧର ସାମଲ, ଉତ୍ସାହୀ ଯୁବକ ଶଶିଭୂଷଣ ମହାନ୍ତି ଏମ୍.ଏ. ଶ୍ରେଣୀରେ ତାଙ୍କର ସତୀର୍ଥ ଥିଲେ । ଶ୍ରୀନିବାସବାବୁଙ୍କ ଅନର୍ସ ପରୀକ୍ଷାର କୃତିତ୍ୱ ହେତୁ ସରକାରଙ୍କ ପକ୍ଷରୁ ଏମ୍.ଏ. ପଢ଼ିବା ନିମନ୍ତେ ଏକ ସ୍ନାତକୋତ୍ତର ବୃତ୍ତି ମଧ ତାଙ୍କୁ ମିଳିଲା । ଫଳତଃ ସେ ସମଧିକ ଆଗ୍ରହ ସହକାରେ ଏମ୍.ଏ. ପାଠ୍ୟ ପ୍ରତି ଯଥାଯଥ ଅନୁରକ୍ତି ଓ ମନୋଯୋଗ ହେତୁ ଏମ୍.ଏ. ଓଡ଼ିଆ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି ଭକ୍ତକବି ମଧୁସୂଦନ ରାଓ ସ୍ୱର୍ଣ୍ଣପଦକ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଲାଭ କଲେ । ଏଠାରେ ତାଙ୍କ ବିଦ୍ୟାର୍ଥୀ ଜୀବନର ଏକପ୍ରକାର ସନ୍ତୋଷପୂର୍ଣ୍ଣ ପରିସମାପ୍ତି ଘଟିଲା ।

ଏହା ପରେ କଲେଜରେ ଅଧାପକରୂପେ ନିଯୁକ୍ତିର ସ୍ୱପ୍ନ । ଉକ୍ତ ବର୍ଷ ସରକାରୀ କଲେଜରେ ନିଯୁକ୍ତିର ସମ୍ଭାବନା ନ ଥିଲା । କଟକର ଖ୍ରୀଷ୍ଟ କଲେଜରେ ଦୁଇଟି ଅଧାପକ ପଦ ପୂରଣ ନିମନ୍ତେ ବିଜ୍ଞାପନ ବାହାରିଲା । କଲେଜରେ ବହୁ ବୟସ୍କ କର୍ମଜୀବୀ ଭବିଷ୍ୟତ ଉନ୍ନତି ଲକ୍ଷ୍ୟରେ ଡିଗ୍ରୀ ଲାଭ ନିମନ୍ତେ ଛାତ୍ରଭାବେ ଯୋଗ ଦେଇଥାନ୍ତି । ବାଧତାମୂଳକ ଓ ଐଚ୍ଛିକ ଓଡ଼ିଆ ବିଷୟ ନେଇ ପଢୁଥିବା ଆଗ୍ରହୀ ଛାତ୍ରମାନଙ୍କ ସଂଖ୍ୟା ଅଧିକ । ଏକ ପ୍ରଶସ୍ତ ଶ୍ରେଣୀ କକ୍ଷରେ ଆସୀନ ଛାତ୍ରମାନଙ୍କ ପଛରେ କଲେଜର ଅଧ୍ୟକ୍ଷ ରେଭରେଣ୍ଡ ବ୍ରଜାନନ୍ଦ ମହାନ୍ତି ଓ ଓଡ଼ିଆ ବିଭାଗର ମୁଖ୍ୟ ଅଧାପକ ଶ୍ରୀଧର ଦାସ ବସି ଅଧାପକ ପଦ ନିମନ୍ତେ ଆଗତ ପ୍ରାର୍ଥୀମାନଙ୍କ ଅଧାପନା ଶୈଳୀ ଓ କୃତିତ୍ୱର ସାମର୍ଥ୍ୟ ଆକଳନ କରୁଥାନ୍ତି । ଏହି ପରୀକ୍ଷାରେ ଶ୍ରୀଯୁକ୍ତ ମିଶ୍ର ଓ ତାଙ୍କ ସହପାଠୀ ଶ୍ରୀ ପଠାଣି ପଟ୍ଟନାୟକ ଯୋଗ୍ୟ ବିବେଚିତ ହୋଇ ଅଧାପକ ଭାବେ ନିଯୁକ୍ତିପତ୍ର ଲାଭ କଲେ । ଛାତ୍ର ଜୀବନର ସମାପ୍ତି ପରେ ଅଧାପକ ଜୀବନର ଆରମ୍ଭ ହେଲା । କଲେଜର ଓଡ଼ିଆ ଅଧାପକ ଶ୍ରୀଯୁକ୍ତ ଶ୍ରୀଧର ଦାସ ଓ ପଣ୍ଡିତ

ବାନାୟର ଆଗ୍ରର୍ଯ୍ୟ ଗୁଣୀ ଓ ବହୁ ଶାସ୍ତ୍ରଦର୍ଶୀ ଅଧ୍ୟାପକ ଭାବେ ପରିଚିତ । ସେମାନଙ୍କ ଦିଗ୍‌ଦର୍ଶନ ନବନିଯୁକ୍ତ ଅଧ୍ୟାପକ କର୍ମୀ ଦୁହିଙ୍କୁ ସଫଳ ଅଧ୍ୟାପକ ହେବା ନିମନ୍ତେ ପ୍ରେରଣା ଦେଲା । ଅଧ୍ୟାପକ ମିଶ୍ର ବାର୍ଷିକ ପାଠ୍ୟକ୍ରମର ଶେଷ ଅପ୍ରେଲ ମାସ ଶେଷ ପର୍ଯ୍ୟନ୍ତ ନିଯୁକ୍ତି ହୋଇଥିଲେ । ଗ୍ରୀଷ୍ମ ଅବାକାଶ ପରେ ଏହାର ନବୀକରଣ ହେଲା । ୧୯୫୨ ପୂଜା ଛୁଟି ପୂର୍ବରୁ ଓଡ଼ିଶା ଲୋକସେବା ଆୟୋଗର ସାକ୍ଷାତ୍‌କାର ପରେ ଅଧ୍ୟାପକ ମିଶ୍ର ସରକାରୀ ନିଯୁକ୍ତି ନିମନ୍ତେ ଯୋଗ୍ୟ ବିବେଚିତ ହୋଇ ବାଲେଶ୍ୱରର ଫକୀରମୋହନ କଲେଜରେ ସରକାରୀ ଅଧ୍ୟାପକରୂପେ ଯୋଗଦାନ କଲେ । ସେତେବେଳେ ଫକୀରମୋହନ କଲେଜ ସରକାରୀ ଜିଲ୍ଲାସ୍କୁଲ ପରିସରରେ ନିର୍ବାହିତ ହେଉଥାଏ । ଏହା ସକାଳ ସାତଟାରୁ ଆରମ୍ଭ ହୋଇ ପ୍ରାୟ ଏଗାରଟା ବେଳେ ଶେଷ ହୁଏ । ତା'ପରେ ଜିଲ୍ଲାସ୍କୁଲର ପାଠ୍ୟ କାର୍ଯ୍ୟକ୍ରମ ସଂପନ୍ନ ହୋଇଥାଏ । ଫଳତଃ ଅପରାହ୍ଣ ଓ ରାତ୍ରିବେଳା ପାଠ୍ୟକ୍ରମର ପ୍ରସ୍ତୁତି ଓ ପାଠ୍ୟବାହ୍ୟ ସାହିତ୍ୟ, ଧର୍ମ, ସଂସ୍କୃତି ଓ ଇତିହାସ ସଂବନ୍ଧୀୟ ବହୁ ଗ୍ରନ୍ଥ ଅଧ୍ୟୟନ ଓ ଅନୁଶୀଳନ ନିମନ୍ତେ ଯଥେଷ୍ଟ ଅବସର ମିଳିଥାଏ ।

କଲେଜରେ ତାଙ୍କ ଛଅବର୍ଷ କାର୍ଯ୍ୟକାଳ ମଧ୍ୟରେ ବହୁ କୃତିତ୍ୱସଂପନ୍ନ ବ୍ୟକ୍ତି ଅଧ୍ୟକ୍ଷ ହୋଇଥିଲେ । ପ୍ରଫେସର ପି.ଏସ୍.ସୁନ୍ଦରମ୍, ଡକ୍ଟର ଦାମୋଦର ମିଶ୍ର, ପ୍ରଫେସର ଗଣେଶ୍ୱର ମିଶ୍ର, ପ୍ରଫେସର ପ୍ରହ୍ଲାଦ ପ୍ରଧାନଙ୍କ ଭଳି ଗୁଣୀ ଅଧ୍ୟକ୍ଷମାନଙ୍କ ଅଧୀନରେ କାର୍ଯ୍ୟ କରିବାର ସନ୍ତୋଷ ଓ ଆନନ୍ଦ ତାଙ୍କୁ ମିଳିଥିଲା । ପରବର୍ତ୍ତୀ କାଳରେ କୃତୀ ପ୍ରଫେସର, କୁଳପତି ଓ ଲୋକସଭା ସଦସ୍ୟ ଡକ୍ଟର ମନ୍ମଥନାଥ ଦାସଙ୍କ ପରି ଐତିହାସିକ ଓ ଅଧ୍ୟାପକଙ୍କ ପଠନ ସ୍ପୃହା, ଗବେଷଣା ମନୋବୃତ୍ତି ଯଥାର୍ଥରେ ଅସାଧାରଣ ଥିଲା । ତାଙ୍କ ଅନୁଜ ପରବର୍ତ୍ତୀ କାଳର ସୁଲେଖକ ଓ ସୁବକ୍ତା ମନୋଜ ଦାସ ଓ କବି ବ୍ରଜନାଥ ରଥଙ୍କ ଶ୍ରେଣୀଗୃହରେ ଏକତ୍ର ଉପସ୍ଥିତି ଏବେ ମଧ୍ୟ ଡକ୍ଟର ମିଶ୍ରଙ୍କ ସ୍ମରଣୀୟ ଘଟଣା । ଫକୀରମୋହନ କଲେଜରେ ଥିଲାବେଳର ଦୁଇଟି ଘଟଣା ଏବେ ମଧ୍ୟ ତାଙ୍କ ସ୍ମରଣରେ ଅଛି । ୧୯୫୫ ମସିହା ବରାଳ ବନ୍ୟା ହେତୁ କଲେଜରେ ଛାତ୍ରୀମାନଙ୍କ ଦ୍ୱାରା ଅଭିନୀତ ନାଟକ ଓ ଅଧ୍ୟାପକମାନଙ୍କ ଆର୍ଥିକ ସହାୟତାଲବ୍ଧ ଅର୍ଥରେ କିଛି ଲୁଗାପଟା କିଣି ଅଧ୍ୟାପକ ଗୋପାଳଚନ୍ଦ୍ର ପଟ୍ଟନାୟକ ଓ ଅଧ୍ୟାପକ ମିଶ୍ର ଜନସେବକ ଓ ବିଧାୟକ ମୁରଲୀବାବୁଙ୍କ ସହ ପୀରହାଟ ନିକଟବର୍ତ୍ତୀ ଭେଡ଼ା ଅଞ୍ଚଳରେ ବନ୍ୟାପ୍ରପୀଡ଼ିତ ଲୋକଙ୍କୁ ବସ୍ତ୍ରଦାନ କରିଥିଲେ । କଲେଜର ଅଧ୍ୟାପକମାନଙ୍କ ମଧ୍ୟରେ ଯଥେଷ୍ଟ ଆତ୍ମୀୟତା ଜୀବନରେ ସ୍ମରଣୀୟ ଘଟଣା । ୧୯୫୭ ମସିହା ସାଧାରଣ ନିର୍ବାଚନରେ ବାଲେଶ୍ୱରର ବିଭିନ୍ନ ଅଞ୍ଚଳରେ ନିର୍ବାଚନ ପରିଚାଳନା ଅଧିକାରୀ ଭାବେ ଦାୟିତ୍ୱପୂର୍ଣ୍ଣ କର୍ମ ସଂପାଦନ ମଧ୍ୟ ସ୍ମରଣୀୟ ଥିଲା । ମହାବିଦ୍ୟାଳୟର ମୁଖପତ୍ର 'ଫକୀର'ର ଓଡ଼ିଆ ବିଭାଗର ସଂପାଦନା ଦାୟିତ୍ୱ ମଧ୍ୟ ସେ ନିର୍ବାହ କରିଥିଲେ । ତାଙ୍କ ସାହିତ୍ୟଚେତନା

ବିକାଶର ଏହା ଥିଲା ସହାୟକ । ଫକୀରମୋହନ କଲେଜରେ ଥିଲାବେଳେ ସାହିତ୍ୟତତ୍ତ୍ୱ ବିଷୟକ ତାଙ୍କର କେତେକ ପ୍ରବନ୍ଧ ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିଲା । ପରବର୍ତ୍ତୀ କାଳରେ ଏହା 'ସାହିତ୍ୟ କଥା' ପୁସ୍ତକରେ ସଂକଳିତ ହୋଇ କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର ଦ୍ୱାରା ପ୍ରକାଶିତ ହେଲା ।

୧୯୫୮ରେ ଫକୀରମୋହନ କଲେଜରୁ ଅଧ୍ୟାପକ ମିଶ୍ର ରେଭେନ୍ସା କଲେଜକୁ ବଦଳି ହେଲେ । ଏଠାରେ ତାଙ୍କୁ ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟାପନାର ସୁଯୋଗ ମିଳିଲା । ସେତେବେଳେ ତାଙ୍କ 'ସାହିତ୍ୟ କଥା' ପୁସ୍ତକର ପ୍ରକାଶକ କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋରର ସତ୍ତ୍ୱାଧିକାରୀ ଶ୍ରୀ ଅନନ୍ତ ମିଶ୍ର ତାଙ୍କୁ ଏକ ପ୍ରସ୍ତାବ ଦେଲେ । ଫକୀରମୋହନ ସେନାପତିଙ୍କ ଆତ୍ମଚରିତ ଧାରାବାହିକ ଭାବେ 'ଉତ୍କଳ ସାହିତ୍ୟ' ପତ୍ରିକାରେ ତାଙ୍କ ଦେହାନ୍ତ ପରେ ପରେ ପ୍ରକାଶିତ ହୋଇଥିଲା । କିନ୍ତୁ ମୂଳ ଅତ୍ମଚରିତକୁ ଅବିକଳ ସଂଗ୍ରହ ଓ ପ୍ରକାଶ ନ କରି ତାଙ୍କ ପୁତ୍ର ମୋହିନୀମୋହନ ସେନାପତି ତା'ର ଏକ ସଂକ୍ଷିପ୍ତ ସଂସ୍କରଣ ମାତ୍ର ପ୍ରକାଶ କରିଥିଲେ । ଅନନ୍ତବାବୁ ସନ୍ଧାନ ପାଇଲେ 'ଉତ୍କଳ ସାହିତ୍ୟ' ମୂଳ ପତ୍ରିକାରେ 'ଆତ୍ମଚରିତ' ଉତ୍କଳ ବିଶ୍ୱବିଦ୍ୟାଳୟ ପାଠାଗାରରେ ସଂରକ୍ଷିତ ଅଛି । ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟର କେତେକ ଶିକ୍ଷାଦାନୀ ବିଭାଗ ସହ ବିଶ୍ୱବିଦ୍ୟାଳୟର ଗ୍ରନ୍ଥାଗାରର କିଛି ଅଂଶ କଟକର ବର୍ଦ୍ଧମାନ କୋଠି ହତାରେ ଏହା ସଂରକ୍ଷିତ ଅଛି । ପ୍ରକାଶକ ଅନନ୍ତ ମିଶ୍ରଙ୍କ ଅନୁରୋଧ ରକ୍ଷାକରି ଶ୍ରୀ ମିଶ୍ର ନିଜ ଅଧ୍ୟାପନା ଦାୟିତ୍ୱ ସମାପ୍ତି ପରେ ବର୍ଦ୍ଧମାନ କୋଠିକୁ ଯାଇ ଦୀର୍ଘକାଳର ପରିଶ୍ରମ ପରେ ଉତ୍କଳ ସାହିତ୍ୟ ପତ୍ରିକାରୁ ଫକୀରମୋହନଙ୍କ ମୂଳ ଆତ୍ମଚରିତ ଉଦ୍ଧାର କଲେ । ଏହା ଦ୍ୱିତୀୟ ସଂସ୍କରଣରେ ଫକୀରମୋହନ ଗ୍ରନ୍ଥାବଳୀରେ ସ୍ଥାନିତ ହେଲା । ପରବର୍ତ୍ତୀ କାଳରେ ଅଧ୍ୟାପକ ମିଶ୍ର ନିଜ ଗବେଷଣା ସନ୍ଦର୍ଭ 'ଆଧୁନିକ ଓଡ଼ିଆ ଗଦ୍ୟସାହିତ୍ୟ' ପ୍ରସ୍ତୁତି ଅବସରରେ 'ସତ୍ୟବାଦୀ' ପତ୍ରିକାରୁ ପ୍ରାପ୍ତ ଏକ ପ୍ରବନ୍ଧ ଲେଖିଥିଲେ । ସେକାଳରେ କୁସଂସ୍କାରଗ୍ରସ୍ତ ସମାଜରେ ଫକୀରମୋହନ ଜଣେ ଦୂରଦର୍ଶୀ ସଂସ୍କାରକ ଭାବେ ବାଳିକା ବିଦ୍ୟାଳୟ ସ୍ଥାପନ କରିବାରୁ ରାଜା ବୈକୁଣ୍ଠନାଥ ଦେ ବାହାଦୁରଙ୍କ ପୁତ୍ର ଶ୍ୟାମାନନ୍ଦ ଦେ ଫକୀରମୋହନଙ୍କୁ ଭର୍ତ୍ସନାପୂର୍ବକ କହିଥିଲେ ବାଳିକାମାନେ ଶିକ୍ଷାଲାଭ କଲେ ପ୍ରେମପତ୍ର ଲେଖିବେ ଓ ଦୁଷ୍ଟରିତ୍ରା ହେବେ । ତେଣୁ ଏହି ବିଦ୍ୟାଳୟ ଉଠାଇ ଦେବାକୁ ଫକୀରମୋହନଙ୍କୁ ପରାମର୍ଶ ଥିଲା । ଶ୍ରୀ ମିଶ୍ରଙ୍କ ଲିଖିତ ପ୍ରବନ୍ଧ ସୂଚନାରେ ପରବର୍ତ୍ତୀ କାଳରେ ଫକୀରମୋହନଙ୍କ ଆତ୍ମଚରିତ 'ନେସ୍‌ନାଲ ବୁକ୍ ଟ୍ରଷ୍ଟ'ର ପ୍ରସ୍ତାବକ୍ରମେ ସଂପାଦନା କରିଥିବା ଅବସରରେ ଗବେଷକ ଦେବେନ୍ଦ୍ରନାଥ ଦାଶ ନିଜ ସଂକଳିତ ଗ୍ରନ୍ଥରେ ଏହା ଅନ୍ତର୍ଭୁକ୍ତ କରିଛନ୍ତି । ଏହା ଏକ ଉପାଦେୟ ସଂଯୋଗ । ଏଥିରେ ସେ ଡକ୍ଟର ମିଶ୍ରଙ୍କୁ ମଧ୍ୟ ସ୍ୱୀକୃତି ଦେଇଛନ୍ତି ।

ରେଭେନ୍ସା କଲେଜରେ ପାଞ୍ଚବର୍ଷ ଅଧ୍ୟାପନା ଓ ଏମ୍.ଏ. ଶ୍ରେଣୀରେ ଅଧ୍ୟାପନା ଭିତ୍ତିରେ ଅଧ୍ୟାପକ ମିଶ୍ର ପଶ୍ଚିମ ବଙ୍ଗର ବୀରଭୂମ ଜିଲ୍ଲା ଶାନ୍ତିନିକେତନଠାରେ ବିଶ୍ୱଭାରତୀ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଭାବେ ମନୋନୀତ ହୋଇ ସେଠାରେ ଯୋଗ ଦେଲେ । ତାଙ୍କ ମୂଳ ଲକ୍ଷ୍ୟ ଥିଲା 'ଆଧୁନିକ ଓଡ଼ିଆ ଗଦ୍ୟସାହିତ୍ୟ' ସଂପର୍କରେ ଗବେଷଣା ଆଗ୍ରହର ଯଥାର୍ଥ ରୂପାଙ୍କନ ଓ ସଫଳତା ଲାଗି କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟର ସମୃଦ୍ଧ ପାଠାଗାର ସୁଯୋଗ ଦେବ ଏବଂ ବଙ୍ଗଳା ସାହିତ୍ୟ ସହ ତୁଳନାତ୍ମକ ବିଚାରର ଅବକାଶ ମଧ୍ୟ ମିଳିବ । ଏହି ଦୂରଦର୍ଶୀ କର୍ମର ବାସ୍ତବ ସଂପାଦନ ଲାଗି ସେ ସେଠାରେ ଏକାନ୍ତ ପ୍ରୟାସୀ ହେଲେ । ଶାନ୍ତିନିକେତନରେ ଅଧ୍ୟାପକ ମିଶ୍ରଙ୍କ ରହଣି କାଳ ସାତବର୍ଷ ଓ ସେଠାରେ ସେ ଚାରିବର୍ଷକାଳ ମଧ୍ୟ ପ୍ରାଧ୍ୟାପକ ଓ ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ପଦକୁ ଉନ୍ନୀତ ହୋଇଥିଲେ । ସେଠାରେ ସେ ବିଭାଗୀୟ ମୁଖ୍ୟ ଥିଲାବେଳେ ପ୍ରଫେସର କୁଞ୍ଜବିହାରୀ ତ୍ରିପାଠୀ, ପ୍ରଫେସର କୁଞ୍ଜବିହାରୀ ଦାଶ, ଅଧ୍ୟାପକ ଜୟକୃଷ୍ଣ ମିଶ୍ର ଓ ଅଧ୍ୟାପକ ରାଜକିଶୋର ରାୟଙ୍କୁ ନିମନ୍ତ୍ରଣପୂର୍ବକ ବିଭାଗୀୟ ଛାତ୍ରମାନଙ୍କୁ ସେମାନଙ୍କ ଦ୍ୱାରା ଉଦ୍‌ବୋଧନ ପ୍ରୟାସୀ ହୋଇଥିଲେ । ଶାନ୍ତିନିକେତନରେ ଥିବା ସମୟ ଓ ସୁଯୋଗର ସଦ୍‌ବ୍ୟବହାରପୂର୍ବକ ସେ 'ଆଧୁନିକ ଓଡ଼ିଆ ଗଦ୍ୟସାହିତ୍ୟ' ଶୀର୍ଷକ ସନ୍ଦର୍ଭ ରଚନା କରିଥିଲେ । ଏହା ଉଚ୍ଚ ଶ୍ରେଣୀରେ ଅଧ୍ୟୟନ ଓ ଗବେଷଣାରତ ଛାତ୍ରଛାତ୍ରୀଙ୍କ ନିମନ୍ତେ ଏକ ଉପାଦେୟ ଏକାଡେମିକ୍ ସନ୍ଦର୍ଭ । ଏହି ସନ୍ଦର୍ଭ ରଚନା ନିମନ୍ତେ ତାଙ୍କୁ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଉପାଧି ମିଳିଥିଲା ।

ଶାନ୍ତିନିକେତନରେ ସେତେବେଳେ ବିଶ୍ୱବିଦ୍ୟାଳୟର ସଂପ୍ରସାରଣ ଭାଷଣ ନିମନ୍ତେ ଓଡ଼ିଶାର ତିନିଜଣଙ୍କ ନାମ ଦେବା ନିମନ୍ତେ ଉପାଚାର୍ଯ୍ୟ ବିଭାଗୀୟ ମୁଖ୍ୟରୂପେ ଶ୍ରୀ ମିଶ୍ରଙ୍କୁ ଅନୁରୋଧ କଲେ । ଅଧ୍ୟାପକ ମିଶ୍ର ଡକ୍ଟର ମନ୍ମଥନାଥ ଦାସ, ପ୍ରଫେସର ବିଧୁଭୂଷଣ ଦାସ ଓ ଡକ୍ଟର ହରେକୃଷ୍ଣ ମହତାବଙ୍କ ନାମ ପ୍ରସ୍ତାବ ଆକାରରେ ଦେଲେ । ଓଡ଼ିଶାର ଇତିହାସ ରଚୟିତା ଓ ସଂସ୍କୃତିର ପୋଷଣକାରୀ ଭାବେ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଡକ୍ଟର ହରେକୃଷ୍ଣ ମହତାବଙ୍କୁ ନିମନ୍ତ୍ରଣ କଲେ । ସେ ସେଠାରେ ତିନୋଟି ଅଭିଭାଷଣ ଦେଇଥିଲେ । ପରୀକ୍ଷା ସଂକ୍ରାନ୍ତ ଗୋପନୀୟ ଦାୟିତ୍ୱରେ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ ଓ ଡକ୍ଟର ଦାସଙ୍କ ସହାୟତା ବିଶ୍ୱବିଦ୍ୟାଳୟ କ୍ରମାଗତ ଭାବେ ଗ୍ରହଣ କରୁଥିଲା । ଡକ୍ଟର ମହତାବ ସେଠାରେ ନିଜ ଅବସ୍ଥାନ କାଳରେ ବଙ୍ଗୀୟମାନେ ଦାବି କରୁଥିବା ଅଜୟ ନଦୀକୂଳରେ ମନ୍ଦିରରେ ଜୟଦେବଙ୍କ ସ୍ମୃତି ଓ ସାଧନାର ଇତିହାସ ଜାଣିବା ନିମନ୍ତେ ଆଗ୍ରହୀ ହୋଇ ସେଠାକୁ ଯିବା ନିମନ୍ତେ ପ୍ରସ୍ତାବ ଦେଲେ । ଅଧ୍ୟାପକ ମିଶ୍ର ତାଙ୍କୁ ସେଠାକୁ ନେଇଥିଲେ । ଉକ୍ତ ମନ୍ଦିର ଓ ପୂଜକଙ୍କ ଉତ୍ତରରୁ ସେଭଳି କୌଣସି ଗ୍ରହଣଯୋଗ୍ୟ ଯଥାଯଥ ତଥ୍ୟ ଜୟଦେବଙ୍କ ସଂପର୍କରେ ମିଳି ନ ଥିଲା ।

ସାତୋଟି ବର୍ଷ ବିଶ୍ୱଭାରତୀରେ ଏକନିଷ୍ଠ ଏକାଡେମିକ୍ ସେବା ଦେଇ ଅଧ୍ୟାପକ ମିଶ୍ର ୧୯୭୦ ମସିହାରେ ରେଭେନ୍ସା କଲେଜରେ ସମାନ ପଦ ଅଧ୍ୟାପକରୂପେ ଓଡ଼ିଆ ବିଭାଗରେ ପୁଣି ଯୋଗ ଦେଲେ । ବିଭାଗରେ ଅଧ୍ୟାପନା ସାଙ୍ଗକୁ ତାଙ୍କୁ କଲେଜର ପୂର୍ବଛାତ୍ରାବାସର ଅଧୀକ୍ଷକ ଦାୟିତ୍ୱ ବହନ କରିବାକୁ ପଡ଼ିଲା । ଛାତ୍ରାବାସରେ ସେତେବେଳେ ପ୍ରାୟ ଦୁଇଶହରୁ ଅଧିକ ଛାତ୍ର ଅନ୍ତେବାସୀ ଭାବେ ରହୁଥାନ୍ତି । ସଂଖ୍ୟା ବିଚାରରେ ସେମାନଙ୍କ ମଧ୍ୟରେ ଶାନ୍ତିଶୃଙ୍ଖଳା ରକ୍ଷା ଓ ଅଧ୍ୟୟନ ନିଷ୍ଠା ପ୍ରତି ସଜାଗ ଦୃଷ୍ଟି ଦେବା ଅଧୀକ୍ଷକଙ୍କ ଦାୟିତ୍ୱ । ଅବଶ୍ୟ ସହକାରୀ ଅଧୀକ୍ଷକ ଇଂରାଜୀ ଅଧ୍ୟାପକ ଶ୍ରୀ ରାମଚନ୍ଦ୍ର ତ୍ରିପାଠୀ ଅଧ୍ୟାପକ ମିଶ୍ରଙ୍କୁ ସହାୟତା ଦେଉଥାନ୍ତି । ଅତୀତରେ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି ପୂର୍ବ ଛାତ୍ରାବାସରେ ଅଧୀକ୍ଷକ ଥିଲେ । ସେତେବେଳେ ଅନ୍ତେବାସୀଙ୍କ ସଂଖ୍ୟା ଓ ସମସ୍ୟା ଥିଲା ଅଳ୍ପ । ପୂର୍ବ ଛାତ୍ରାବାସର ଶାନ୍ତ ପରିବେଶ ପ୍ରଫେସର ମହାନ୍ତିଙ୍କର ପ୍ରାଚୀ ସମିତି ଓଡ଼ିଆ ଗ୍ରନ୍ଥ ସଂପାଦନାର ସାଧନା କ୍ଷେତ୍ର ଥିଲା । କୃତୀ ଇଂରେଜୀ ପ୍ରଫେସର ତ୍ରିଲୋଚନ ମିଶ୍ର ମଧ୍ୟ ଏ ଛାତ୍ରାବାସର ଅଧୀକ୍ଷକ ଥିଲେ । ଏଭଳି ଯୋଗ୍ୟ ପୂର୍ବ ଅଧିକାରୀଙ୍କ ପରଂପରା ଓ ଶୃଙ୍ଖଳା ରକ୍ଷା ଅଧ୍ୟାପକ ମିଶ୍ରଙ୍କ ପକ୍ଷରେ କଠିନ ବ୍ୟାପାର ଥିଲା । ତଥାପି ସେ ଗଭୀର ନିଷ୍ଠାସହ ନିଜ ଅଧ୍ୟାପନା କର୍ମ ସହ ଛାତ୍ରାବାସରେ ଶୃଙ୍ଖଳା ଓ ଅଧ୍ୟୟନର ଅନୁକୂଳ ପରିବେଶର ସଂରକ୍ଷଣ ନିମନ୍ତେ ଯତ୍ନପର ହୋଇଥିଲେ । ୧୯୨୨ମସିହାରେ ଏ ଛାତ୍ରାବାସର ପ୍ରତିଷ୍ଠା ଓ ୧୯୭୨ରେ ଡକ୍ଟର ମିଶ୍ର ଏହାର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପାଳନ ନିମନ୍ତେ ଯତ୍ନପର ହେଲେ । ସେତେବେଳେ ଛାତ୍ରାବାସରେ ଅନ୍ତେବାସୀ ତଥା ମୁଖପତ୍ର 'ଜାଗରଣ'ର ସଂପାଦକ ଶ୍ରୀ ଗୋପବନ୍ଧୁ ପଟ୍ଟନାୟକ ଜୟନ୍ତୀ ପାଳନରେ ଯଥେଷ୍ଟ ସହାୟତା ଅନ୍ୟମାନଙ୍କ ସହ ଦେଇଥିଲେ । ଶ୍ରୀ ପଟ୍ଟନାୟକ ଓ ଅନ୍ୟତମ ଅନ୍ତେବାସୀ ଶ୍ରୀ ମୃତ୍ୟୁଞ୍ଜୟ ଷଡ଼ଙ୍ଗୀ ପରେ ଭାରତୀୟ ପ୍ରଶାସନିକ ସେବାର କର୍ମକର୍ତ୍ତାଭାବେ ଯୋଗ୍ୟ ବିବେଚିତ ହୋଇଥିଲେ । ଶ୍ରୀ ପଟ୍ଟନାୟକ ଅବସର ନେବା ପୂର୍ବରୁ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟର କୁଳପତି ମଧ୍ୟ ହୋଇଥିଲେ । ପୂର୍ବ ଛାତ୍ରାବାସର ବହୁ କୃତୀ ଛାତ୍ରମାନଙ୍କର ଅଧ୍ୟୟନ ଭୂମି ଓ ଉଚ୍ଚ ବୃତ୍ତି ଗଠନରେ ସହାୟକ ହୋଇଥିଲା । ଅଧ୍ୟକ୍ଷ ଡକ୍ଟର ମହେନ୍ଦ୍ର କୁମାର ରାଉତ ଛାତ୍ରାବାସର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପାଇଁ ଉଲ୍ଲେଖ୍ୟ ସହାୟତା ଦେଇଥିଲେ । ଜୟନ୍ତୀ ପାଳନ ଅବସରରେ ଏକଦା ଛାତ୍ରାବାସର ଅନ୍ତେବାସୀ ଓ ସବୁଜ ସାହିତ୍ୟ ସମିତିର କୃତୀ ଲେଖକ ଶ୍ରୀ ଅନ୍ନଦାଶଙ୍କର ରାୟ, ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ, ଶ୍ରୀଯୁକ୍ତ ହରିହର ମହାପାତ୍ର ଓ ଶ୍ରୀ ଶରତ ମୁଖାର୍ଜୀଙ୍କୁ ଏକ ସାରସ୍ୱତ ସନ୍ଧ୍ୟାରେ ଶ୍ରୀ ମିଶ୍ର ସମ୍ମିଳିତ କରିଥିଲେ । ଏହା ସାଙ୍ଗକୁ ଏକଦା ଏ ଛାତ୍ରାବାସର ଅନ୍ତେବାସୀ ଥିବା ଶ୍ରୀଯୁକ୍ତ ସୀତାକାନ୍ତ ମହାପାତ୍ର, ଶ୍ରୀ ରମାକାନ୍ତ ରଥଙ୍କ ଭଳି କୃତୀ ଛାତ୍ର ଓ ପରବର୍ତ୍ତୀ କାଳର ଭାରତୀୟ ପ୍ରଶାସନିକ ସେବାର ସଦସ୍ୟ ହୋଇଥିବା ବିଦ୍ୱାନଙ୍କୁ ମଧ୍ୟ ନିମନ୍ତ୍ରଣ କରି

ଅନ୍ତେବାସୀମାନଙ୍କୁ ଉଦ୍‌ବୋଧିତ କରିଥିଲେ । ଏହି ଉତ୍ସବ ଅନୁଷ୍ଠାନ ପୂର୍ବ ଛାତ୍ରାବାସର ଇତିହାସରେ ସ୍ମରଣୀୟ ଓ ଅନ୍ତେବାସୀମାନଙ୍କ ନିମନ୍ତେ ପ୍ରେରଣାଦାୟକ ହୋଇଥିଲା ।

ଏହି ସମୟରେ ଓଡ଼ିଆ ବିଭାଗରେ ଉଚ୍ଚ ଏକାଡେମିକ୍ ଉପାଧିର ଅଧିକାରୀ ହୋଇଥିବାରୁ ଓଡ଼ିଶା ଲୋକସେବା ଆୟୋଗ ଓଡ଼ିଆ ଅଧ୍ୟାପକ ମନୋନୟନ ନିମନ୍ତେ ଡକ୍ଟର ମିଶ୍ରଙ୍କୁ ବିଷୟ ବିଶେଷଜ୍ଞରୂପେ ମନୋନୟନ ପ୍ରକ୍ରିୟାରେ ଆୟୋଗକୁ ସହାୟତା ଦେବା ନିମନ୍ତେ ମନୋନୀତ କରିଥିଲେ । ନିଜ ସାଧୁତା ଓ ନିରପେକ୍ଷ ବିଚାରଦ୍ୱାରା ସେ ଆୟୋଗଙ୍କୁ ପ୍ରାର୍ଥୀ ମନୋନୟନ ପ୍ରକ୍ରିୟାରେ ଯଥାଯଥ ସହାୟତା ଦେଇଥିଲେ । ପ୍ରାୟ ଚାରିବର୍ଷ ଛାତ୍ରାବାସର ଗୁରୁଦାୟିତ୍ୱ ବହନ ପରେ ଅଧ୍ୟାପକ ମିଶ୍ରଙ୍କର ରମାଦେବୀ ମହିଳା କଲେଜର ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକଭାବେ ବଦଳି ହେଲା । ଏଠାରେ ଛଅମାସ କାଳ ନିଜ ଦାୟିତ୍ୱ ନିର୍ବାହ କଲା ପରେ ଓଡ଼ିଶା ସରକାରଙ୍କ ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥାର ଗ୍ରନ୍ଥ ପ୍ରକାଶନ ବ୍ୟାପାରରେ ଭାଷା ବିଶେଷଜ୍ଞ ଭାବେ ମଧ୍ୟ ତାଙ୍କୁ ନିଯୁକ୍ତ କରା ହୋଇଥିଲା । ସେଠାରେ ପ୍ରସ୍ତୁତ ହେଉଥିବା କଲେଜସ୍ତରୀୟ ପାଠ୍ୟପୁସ୍ତକଗୁଡ଼ିକର ଭାଷାଗତ ଶୁଦ୍ଧତା ପରୀକ୍ଷା ପରେ ସଂଶୋଧନ ହେଲା ତାଙ୍କ ଦାୟିତ୍ୱ । ଆଉ ଦୁଇଜଣ ସହଯୋଗୀ ଅଧ୍ୟାପକ ଡକ୍ଟର ଧନେଶ୍ୱର ମହାପାତ୍ର ଓ ଡକ୍ଟର ଶରତଚନ୍ଦ୍ର ପ୍ରଧାନ ମଧ୍ୟ ସେଠାରେ ସମାନ ପଦାଧିକାରୀ ଥିଲେ । ସେମାନଙ୍କ ସହଯୋଗରେ କାର୍ଯ୍ୟ ସାଧନ ଆନନ୍ଦଦାୟକ ଓ ତ୍ରୁଟିଶୂନ୍ୟ ହୋଇଥିଲା ।

ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥାରେ ଭାଷା ବିଶେଷଜ୍ଞଭାବେ ଛଅମାସ କାର୍ଯ୍ୟ କଲା ପରେ ରାଜ୍ୟ ସରକାରଙ୍କୁ କେନ୍ଦ୍ର ସରକାରଙ୍କ ଅନୁରୋଧକ୍ରମେ ଡକ୍ଟର ମିଶ୍ର ଭୁବନେଶ୍ୱରରେ ଅବସ୍ଥିତ କେନ୍ଦ୍ରୀୟ ଅନୁଷ୍ଠାନ ପୂର୍ବାଞ୍ଚଳ ଭାଷାକେନ୍ଦ୍ରରେ ଅଧ୍ୟକ୍ଷରୂପେ ଯୋଗ ଦେଲେ । ଏହି ଅନୁଷ୍ଠାନଟି ମହୀଶୂରରେ ଅବସ୍ଥିତ 'ଭାରତୀୟ ଭାଷା ସମୂହର କେନ୍ଦ୍ରୀୟ ପ୍ରତିଷ୍ଠାନ' ଅଧୀନରେ ପରିଚାଳିତ ପ୍ରତିଷ୍ଠାନ । ସେଠାରେ କେନ୍ଦ୍ରୀୟ ନିର୍ଦ୍ଦେଶକ ଥା'ନ୍ତି ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ । ସେ ପୂର୍ବରୁ ଶାନ୍ତିନିକେତନରେ ମଧ୍ୟ ଅଧ୍ୟାପକ ଥିଲେ । ଓଡ଼ିଆ ଅଧ୍ୟାପକ ହେଲେ ମଧ୍ୟ ପରେ ବିଦେଶରୁ ଭାଷାତତ୍ତ୍ୱରେ ଉଚ୍ଚ ଡିଗ୍ରୀପ୍ରାପ୍ତ ଓ ଉଚ୍ଚ ପଦରେ ଅଧିଷ୍ଠିତ ହେଲେ । ଜାତୀୟ ସଂସ୍କୃତି ଓ ବିଭିନ୍ନ ଭାଷାଭାଷୀଙ୍କ ମଧ୍ୟରେ ପାରସ୍ପରିକ ଅବବୋଧ ଓ ଜାତୀୟ ସଂହତି ରକ୍ଷା ଲକ୍ଷ୍ୟରେ ଏ ପ୍ରତିଷ୍ଠାନ କାର୍ଯ୍ୟ କରୁଥାଏ । ଭୁବନେଶ୍ୱର କେନ୍ଦ୍ରରେ ଅସମୀୟା, ବଙ୍ଗଳା ଓ ଓଡ଼ିଆ ଶିକ୍ଷକମାନେ ପ୍ରଶିକ୍ଷଣ ନେଉଥାନ୍ତି । ନିଜ ମାତୃଭାଷା ଅତିରିକ୍ତ ଅନ୍ୟ ଏକ ଭାଷାରେ ଦକ୍ଷତା ଲାଭ ତାଙ୍କର ଲକ୍ଷ୍ୟ ଥାଏ । ପ୍ରଶିକ୍ଷଣ ଶେଷରେ ଜାତୀୟ ସଂହତିର ଅବବୋଧ ଓ ପ୍ରତିଷ୍ଠା ନିମନ୍ତେ ପରସ୍ପରର ନିକଟବର୍ତ୍ତୀ ହେବାର

ସାଂସ୍କୃତିକ ଚେତନା ସଞ୍ଚାର ଅନୁଷ୍ଠାନଗୁଡ଼ିକର ଲକ୍ଷ୍ୟ ଥାଏ । ଏଠାରେ କାର୍ଯ୍ୟ କରୁଥିବା ବେଳେ କଲିକତା, ଗୌହାଟୀ ଓ ଶିଲଂ ପ୍ରଭୃତି ସ୍ଥାନ ପରିଦର୍ଶନ ଓ ସେଠାରେ ଜାତୀୟ ସଂହତି ଶିବିରର ଆୟୋଜନ ଓ ପରିଚାଳନା ମଧ୍ୟ ଡକ୍ଟର ମିଶ୍ରଙ୍କ କାର୍ଯ୍ୟ ଥାଏ । ଗୌହାଟୀର ପାନବଜାର କନ୍ୟା ଉଚ୍ଚ ବିଦ୍ୟାଳୟରେ ଏକ ଜାତୀୟ ସଂହତି ଶିବିର ପରିଚାଳନା କରି ଓଡ଼ିଆ ଓ ଅସମୀୟା ଶିକ୍ଷାର୍ଥୀ ଓ ଶିକ୍ଷାର୍ଥିନୀମାନଙ୍କ ମଧ୍ୟରେ ଏକ ଆନନ୍ଦପ୍ରଦ ସଂହତି ଚେତନା ସଂଚାର କରିବା ସୁବିଧାଜନକ ହୋଇଥିଲା । ଏହା ପରେ ଉତ୍ତର-ପୂର୍ବ ପାର୍ବତ୍ୟ ପ୍ରଦେଶର ରାଜଧାନୀ ଶିଲଂଠାରେ ଏକ ସମ୍ମେଳନ ମଧ୍ୟ ସଂଘଟିତ ହୋଇଥିଲା । ସେଠାରୁ ସେମାନେ ଦେଶର ସର୍ବାପେକ୍ଷା ଅଧିକ ବୃଷ୍ଟିପାତ ଅଞ୍ଚଳ ଚେରାପୁଞ୍ଜି ଯାଇଥିଲେ । ସେଠାରୁ ପୃଥକ ଦେଶ ହୋଇଥିବା ପୂର୍ବବଙ୍ଗର ବାଂଲାଦେଶ ସ୍ପଷ୍ଟ ଦେଖାଯାଉଥାଏ । ସୀମା ନିର୍ଦ୍ଦେଶକ କୌଣସି ଚିହ୍ନ ଦେଖାଗଲା ନାହିଁ । ସେମାନଙ୍କୁ ବୁଲାଉଥିବା ଗାଇଡ୍ ସୂଚନାକ୍ରମେ କହିଲେ ପୂର୍ବବଙ୍ଗର ବହୁ ଅନୁପ୍ରବେଶକାରୀ ସୀମା ଲଂଘନପୂର୍ବକ ଭାରତର ଆସାମ ବା ମେଘାଳୟରେ ପ୍ରବେଶ କରିଛନ୍ତି । ପୂର୍ବାଞ୍ଚଳ ଭାଷାକେନ୍ଦ୍ରରେ ଅଧ୍ୟକ୍ଷ ଥିଲାବେଳେ କର୍ତ୍ତବ୍ୟ ଅନୁରୋଧରେ ମହୀଶୁର, ଗୌହାଟୀ, ଶିଲଂ ଓ କଲିକତା ପ୍ରଭୃତି ସ୍ଥାନ ପରିଦର୍ଶନ ଓ ସେଠା ଅଧିବାସୀ ଓ କର୍ମକର୍ତ୍ତାଙ୍କ ସହ ସଖ୍ୟ ସ୍ଥାପନର ଅପୂର୍ବ ସୁଯୋଗ ମିଳିଥିଲା ।

ପୂର୍ବାଞ୍ଚଳ ଭାଷାକେନ୍ଦ୍ରରେ ପ୍ରାୟ ଦୁଇବର୍ଷରୁ ଅଧିକ କାଳ କାର୍ଯ୍ୟରତ ହେଲା ବେଳକୁ ଡକ୍ଟର ମିଶ୍ରଙ୍କ ବୟସ ୫୦ ବର୍ଷ । ଆଉ ଦଶବର୍ଷ ସ୍ଥିର ଭାବରେ ଏକ ମୂଳ କର୍ମକ୍ଷେତ୍ରରେ ରହିବା ଇଚ୍ଛା ମନମଧ୍ୟରେ କାର୍ଯ୍ୟକାରୀ ହେଉଥାଏ । ଏହି ସମୟରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗରେ ଏକ ପ୍ରାଧ୍ୟାପକ ପଦ ପୂରଣ ନିମନ୍ତେ ବିଜ୍ଞପ୍ତି ପ୍ରକାଶ କଲେ । ଡକ୍ଟର ମିଶ୍ରଙ୍କ ଦୀର୍ଘକାଳର ଶିକ୍ଷାଦାନ ଓ ପ୍ରଶାସନିକ ଅଭିଜ୍ଞତା ଭିତ୍ତିରେ ସେ ବିଶ୍ୱବିଦ୍ୟାଳୟରେ ପ୍ରାଧ୍ୟାପକ ଭାବେ ଯୋଗ୍ୟ ମନୋନୀତ ହେଲେ । ତାଙ୍କ ଜୀବନର ଶେଷ ଦଶବର୍ଷର କର୍ମକ୍ଷେତ୍ର ହେଲା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ । ସେଠାରେ ପାଞ୍ଚବର୍ଷ ପ୍ରାଧ୍ୟାପକ ଓ ଶେଷ ପାଞ୍ଚବର୍ଷ ପ୍ରଫେସର ଭାବେ ତାଙ୍କ କର୍ଯ୍ୟକାଳ ଅବଧାରିତ ହୋଇଥିଲା । ପ୍ରଫେସର ଭାବେ ସେ ବିଭାଗୀୟ ମୁଖ୍ୟ, ବିଶ୍ୱବିଦ୍ୟାଳୟର ସିନେଟ୍, ସିଣ୍ଡିକେଟ୍ ଓ ଶିକ୍ଷାସମିତିର ସଦସ୍ୟ ହୋଇଥିଲେ । ଏହା ସାଙ୍ଗକୁ ବିଶ୍ୱବିଦ୍ୟାଳୟର ଅନୁଦାନ ଆୟୋଗ, ସଂଘୀୟ ଲୋକ ସେବା ଆୟୋଗ ଏବଂ ଶିକ୍ଷା, ଗବେଷଣା ଓ ପ୍ରଶିକ୍ଷଣର ରାଷ୍ଟ୍ରୀୟ ପରିଷଦ (NCERT) ଭଳି ବହୁ ଗୁରୁତ୍ୱପୂର୍ଣ୍ଣ ଅନୁଷ୍ଠାନକୁ ନିଜ ଏକାଡେମିକ୍ ସେବା ଦାୟିତ୍ୱ ମଧ୍ୟରେ ସେ ବିଶ୍ୱସ୍ତତା ଓ ଗୋପନୀୟତା ରକ୍ଷାପୂର୍ବକ ସେମାନଙ୍କ ଦାୟିତ୍ୱ ସଂପାଦନ କରିଥିଲେ । ପୁଣି ବିଶ୍ୱବିଦ୍ୟାଳୟ ଛାତ୍ରୀନିବାସର ତତ୍ତ୍ୱାବଧାରକ ଏବଂ ଓଡ଼ିଆ ବିଭାଗର ମୁଖ୍ୟଭାବେ ବିଭିନ୍ନ ପ୍ରଶାସନିକ ଦାୟିତ୍ୱ ନିଷ୍ଠାସହ ସଂପାଦନ କରି ୧୯୮୭ ମସିହା ଅକ୍ଟୋବର ମାସରେ

କର୍ମକ୍ଷେତ୍ରରୁ ଅବସର ଗ୍ରହଣ କଲେ । ଅବସର କାଳରେ ମଧ୍ୟ ପୁଣି ପୂର୍ବଭଳି ଓଡ଼ିଶା ଲୋକସେବା ଆୟୋଗ ଦ୍ୱାରା ସରକାରୀ କଲେଜରେ ଓଡ଼ିଆ ଅଧ୍ୟାପକ ପଦ ପୂରଣ ଲାଗି ହେଉଥିବା ସାକ୍ଷାତ୍କାରରେ ଭାଷା ଓ ସାହିତ୍ୟର ବିଶେଷଜ୍ଞ ଭାବେ ମନୋନୟନ ପ୍ରକ୍ରିୟାରେ ଆୟୋଗକୁ ପୂର୍ବ ଥର ଭଳି ସହାୟତା ଦେଇଥିଲେ । ଏଥିଲାଗି କଟକ, ବ୍ରହ୍ମପୁର ଓ ସମ୍ବଲପୁରଠାରେ ସାକ୍ଷାତ୍କାର ସଂପନ୍ନ ହୋଇଥିଲା । ଏହାଛଡ଼ା କେନ୍ଦ୍ରୀୟ ଲୋକସେବା ଆୟୋଗ, ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ଏବଂ ଶିକ୍ଷା ତଥା ଗବେଷଣା ପ୍ରଶିକ୍ଷଣ ପରିଷଦ (NCERT) ଭଳି ରାଷ୍ଟ୍ରୀୟ ପରିଷଦକୁ ପ୍ରାର୍ଥୀ ମନୋନୟନ ଭଳି କାର୍ଯ୍ୟ ସଂପାଦନରେ ସହାୟତା ଦେଇଥିଲେ । ଏଭଳି ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱଗୁଡ଼ିକ ନିଜ ବିବେକ ଓ ବିଚାରର ନିରପେକ୍ଷତା ସହ ସେ ସଂପାଦନ କରିଥିଲେ । ଏହିଭାବରେ ତାଙ୍କ ଅବସରପ୍ରାପ୍ତ ଜୀବନ ମଧ୍ୟ ବହୁ ଗୁରୁତ୍ୱପୂର୍ଣ୍ଣ ଜାତୀୟ ଏକାଡେମିକ୍ କର୍ମ ସଂପାଦନରେ ନିୟୋଜିତ ହୋଇଥିଲା । ଏହା ଆନ୍ତରିକତା, ବିଶ୍ୱସ୍ତତା ଓ ନିଷ୍ପକ୍ଷ ସାଧୁ ମନୋଭାବ ଓ ବିଚାର ବୁଦ୍ଧିଦ୍ୱାରା ସଂପନ୍ନ ହୋଇଥିଲା ।

ଏହି ସମୟରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୂର୍ବଭାରତର ସାତୋଟି ଭାଷାର ପ୍ରତିନିଧିମାନଙ୍କ ସମାବେଶରେ କଲିକତାର ବିଧାନ ନଗର ଷ୍ଟାଡିୟମ୍‌ଠାରେ ସାହିତ୍ୟ ଅନୁଦାନ କର୍ମର ତିନି ସପ୍ତାହବ୍ୟାପୀ ଏକ ଜାତୀୟ ସ୍ତରର କର୍ମଶାଳାର ଆୟୋଜନ କରିଥିଲେ । ଓଡ଼ିଆ, ବଙ୍ଗଳା, ଅସମୀୟା, ମଣିପୁରୀ, ନେପାଳୀ ଓ ମୈଥିଳୀ ଭଳି ଭାଷାର ଅନୁବାଦକମାନେ ଏକ ଭାଷାରୁ ଅନ୍ୟ ଭାଷାରେ ଅନୁବାଦ ସହ ପାରସ୍ପରିକ ଅବବୋଧ ଓ ସହାୟତା ଦାନ ପ୍ରକ୍ରିୟାରେ ଏଠାରେ ସମ୍ମିଳିତ ହୋଇଥିଲେ । ସେତେବେଳେ କେରଳୀ ଭାଷା ସାହିତ୍ୟର ଇତିହାସ ଲେଖକ ଓ ବିଦ୍ୱାନ୍ ଡକ୍ଟର ଜୟକାନ୍ତ ମିଶ୍ର ମୈଥିଳୀ ଭାଷାର ସ୍ୱତନ୍ତ୍ରତା ପ୍ରତିପାଦନ ନିମନ୍ତେ ଏକ ଆନ୍ଦୋଳନ ଆରମ୍ଭ କରିଥିଲେ । ଅନୁବାଦ କର୍ମଶାଳା ଶେଷରେ ସେ କଲିକତାର ମହାଜାତି ସଦନ ପ୍ରାଙ୍ଗଣରେ 'ମୈଥିଳୀ ଭାଷାର ସପକ୍ଷବାଦୀ' ଏକ ଆଲୋଚନାଚକ୍ରର ଆୟୋଜନ କରିଥିଲେ । ଏହି ଆଲୋଚନାଚକ୍ରର ଆୟୋଜନ ପାରସ୍ପରିକ ଅବବୋଧ ଓ ସୁସଂପର୍କ ବିଧାନରେ ସହାୟକ ହୋଇଥିଲା ।

କର୍ମକ୍ଷେତ୍ରରୁ ଅବସର ଗ୍ରହଣର କିଛି ମାସ ପରେ ଭଞ୍ଜବିହାର ଛାଡ଼ି ଭୁବନେଶ୍ୱରରେ ଅବସ୍ଥାନ କରିବାକୁ ହେଲା । ଶିକ୍ଷା ବିଭାଗର ବିଭିନ୍ନ ସ୍ଥାନରେ କାର୍ଯ୍ୟରତ ଥିବାରୁ ଏବଂ ଶାନ୍ତିନିକେତନ ଭଳି ସ୍ଥାନରେ କିଛି ବର୍ଷ କଟିଥିବାରୁ ତାଙ୍କ ପେନସନ୍ ସ୍ଥିର ହେବାରେ ବିଳମ୍ବ ଘଟିଲା । ଏହି ସମୟରେ କେନ୍ଦ୍ର ସରକାରଙ୍କ ରାଷ୍ଟ୍ରୀୟ ସାକ୍ଷରତା ମିଶନ ଆନୁକୂଲ୍ୟରେ ଓଡ଼ିଶାରେ ଲୋକଶିକ୍ଷାର ପ୍ରସାର ପାଇଁ ଜନଶିକ୍ଷା ସାଧନ କେନ୍ଦ୍ରର ପ୍ରତିଷ୍ଠା

ହେଲା । ସାଧାରଣତଃ ଜନଜାତିମାନଙ୍କ ଶିକ୍ଷାର ପ୍ରସାର ଓ ସାଂସ୍କୃତିକ ଚେତନାର ବିକାଶ ଲକ୍ଷ୍ୟରେ ଏହାର ଆରମ୍ଭ ଓ ପରିଚାଳନା । ଏହି ଅନୁଷ୍ଠାନରେ କାର୍ଯ୍ୟକ୍ରମ ସଂଯୋଜକ ଭାବେ କର୍ତ୍ତବ୍ୟ ସାଧନ ନିମନ୍ତେ ତାଙ୍କର ନିଯୁକ୍ତି ହେଲା । ଓଡ଼ିଶାରେ ବହୁ ଜନଜାତି ଶିକ୍ଷା କ୍ଷେତ୍ରରେ ଅନଗ୍ରସର ଥିଲେ । ସେମାନେ ପୁଣି ବହୁ ସଂପ୍ରଦାୟଭୁକ୍ତ ଥିଲେ । ମୁଖ୍ୟ ଦଶଗୋଟି ଜନଜାତିଙ୍କୁ ସେମାନଙ୍କ ଭାଷାରେ ପାଠ୍ୟପୁସ୍ତକ ଓଡ଼ିଆରେ ରଚନା କରିବା ପ୍ରୟାସ ଆରମ୍ଭ ହେଲା । ସେଥିଲାଗି ସେମାନଙ୍କ ଅଞ୍ଚଳକୁ ଯାତ୍ରା ଓ ସେମାନଙ୍କ ସହାୟତା ଗ୍ରହଣ ଏବଂ ଆଳାପ ଆଲୋଚନା ପ୍ରଧାନ ସହାୟକ ଥିଲା । ଜନଜାତି ମଧ୍ୟରେ ସାକ୍ଷରତା ପ୍ରସାର ନିମନ୍ତେ କର୍ମୀମାନଙ୍କୁ ଉଦ୍‌ବୋଧନ ଦେବା ଥିଲା ଡକ୍ଟର ମିଶ୍ରଙ୍କ ଲକ୍ଷ୍ୟ । ପୁଣି କେନ୍ଦ୍ର ସରକାରଙ୍କ ନିର୍ଦ୍ଦେଶ ହେଲା ସେମାନଙ୍କ ମଧ୍ୟରେ ପ୍ରଚଳିତ ଦଶଗୋଟି ଭାଷାରେ ଓଡ଼ିଆ ଲିପିରେ ପାଠ୍ୟପୁସ୍ତକ ପ୍ରଣୟନ କରିବାକୁ ହେବ । ସେମାନଙ୍କ ସାମାଜିକ ସଚେତନତାର ବୃଦ୍ଧି ପାଠ୍ୟପୁସ୍ତକ ପ୍ରଣୟନର ପ୍ରଧାନ ଲକ୍ଷ୍ୟ ଥିଲା । ଏଥିଲାଗି ରାଉରକେଲା, ସୁନ୍ଦରଗଡ଼, ବଲାଙ୍ଗୀରର ହରିଶଙ୍କର ପ୍ରଭୃତି ବିଭିନ୍ନ ସ୍ଥାନକୁ ଯାଇ ସେଠାରେ କର୍ମୀମାନଙ୍କୁ ପ୍ରଶିକ୍ଷଣ ଓ ସହାୟତା ଦେବାକୁ ପଡ଼ିଥିଲା । ଏହା ପରୀକ୍ଷାମୂଳକ ଭାବେ ଅଭିନବ ପ୍ରୟାସ । ଅଧ୍ୟାପକ ମିଶ୍ର ଦୁଇବର୍ଷରୁ ଅଧିକ କାଳ ଏ କାର୍ଯ୍ୟରେ ନିଯୁକ୍ତହୋଇ ନିଷ୍ଠା ସହ କାର୍ଯ୍ୟ ସାଧନ କରିଥିଲେ ।

ପରିଶେଷରେ ଶ୍ରୀଯୁକ୍ତ ମିଶ୍ରଙ୍କ ଜୀବନର ଏକ ସ୍ମରଣୀୟ ଘଟଣା ବିଦେଶ ଯାତ୍ରାର ଅନୁଭୂତି । ତାଙ୍କ ଦ୍ୱିତୀୟ ପୁତ୍ର ଶ୍ରୀ ଶିବପ୍ରସନ୍ନ ମିଶ୍ର ଆମେରିକାରେ 'କଗ୍‌ନିନେଣ୍ଟ' ନାମକ କମ୍ପାନୀର କମ୍ପ୍ୟୁଟର ଇଂଜିନିୟର । ପୁତ୍ର, ପୁତ୍ରବଧୂ ସ୍ମିତାଞ୍ଜଳି ଓ ପୌତ୍ର ଆର୍ଯ୍ୟପ୍ରେମ ସହ ଅଧ୍ୟାପକ ମିଶ୍ର ଛଅମାସ ଲାଗି ଆମେରିକା ଯାଇଥିଲେ । ରହଣିକାଳ ମଧ୍ୟରେ ଆମେରିକାର ବାରୋଟି ରାଜ୍ୟ ବୁଲିବାର ସୁଯୋଗ ତାଙ୍କୁ ମିଳିଥିଲା । ଆମେରିକା ମହାଦେଶରେ ଭୂଖଣ୍ଡର ବିସ୍ତୃତି, ଜନପଥ, ବିପଣୀର ବ୍ୟବସ୍ଥା ସକଳ ଶୃଙ୍ଖଳିତ ଓ ଅତି ଉନ୍ନତମାନର । ପ୍ରତି ରାଜ୍ୟରେ ପ୍ରାୟ କିଛି ଓଡ଼ିଆମାନଙ୍କ ସହ ପରିଚୟ ହେଲା । ଆଲବାମାରେ ଜଣେ ଓଡ଼ିଆ ଡାକ୍ତରଙ୍କ ବିପୁଳ ଆର୍ଥିକ ଅନୁଦାନରେ ଜଗନ୍ନାଥଙ୍କ ମନ୍ଦିର ନିର୍ମିତ ହୋଇଛି । ଆଲବାମାରେ ସ୍ଥାୟୀ ନାଗରିକ ଜଣେ ଆତ୍ମୀୟ ପ୍ରଫେସର ଦିଗମ୍ବର ମିଶ୍ରଙ୍କ ଗୃହରେ ସେ ଅତିଥି ହୋଇଥିଲେ । ଶ୍ରୀ ଶରତ ପ୍ରହରାଜ ନାମକ ଜଣେ ଯୁବକଙ୍କ ସହ ଜଗନ୍ନାଥ ମନ୍ଦିରରେ ସାକ୍ଷାତ ହେଲା । ସେ ସ୍ୱୀକାର କଲେ ରେଭେନ୍ସା କଲେଜରେ ଆଇ.ଏସ୍‌ସି. ପଢୁଥିବା ବେଳେ ସେ ଡକ୍ଟର ମିଶ୍ରଙ୍କ ବାଧ୍ୟତାମୂଳକ ମାତୃଭାଷା ଓଡ଼ିଆ ଶ୍ରେଣୀରେ ଛାତ୍ର ଥିଲେ । ପରେ ଖଡ଼ଗପୁରରୁ ଇଂଜିନିୟରିଂରେ ଉଚ୍ଚ ଡିଗ୍ରୀ ସହ ପିଏଚ୍.ଡି. କରି ଆମେରିକାରେ

ନିଜର ଏକ ସ୍ୱାଧୀନ ବ୍ୟାବସାୟିକ ସଂସ୍ଥା ଗଠନ କରିଛନ୍ତି । ପ୍ରଥମ ଥର ଜଗନ୍ନାଥ ମନ୍ଦିର ଦର୍ଶନ କରିବାର କିଛିଦିନ ଅନ୍ତରରେ ଜଗନ୍ନାଥଙ୍କ ରଥଯାତ୍ରା ଉପଲକ୍ଷରେ ଡକ୍ଟର ସାହୁ, ଶ୍ରୀ ମିଶ୍ରଙ୍କ ପୁଅ ପାଖକୁ ଟେଲିଫୋନରେ ଅନୁରୋଧ କଲେ– 'ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଉତ୍ସବରେ ଆପଣଙ୍କ ବାପାଙ୍କୁ ଛେରା ପହଁରା କରିବାକୁ ଆମେ ଅନୁରୋଧ କରୁଛୁ । ତାଙ୍କୁ ସାଙ୍ଗରେ ଧରି ଆସିବେ ।' ଜୀବନରେ ଏଭଳି ସୁଯୋଗ ଭାଗ୍ୟରେ ଥିଲେ ଘଟେ । ଏହା ପ୍ରଭୁଙ୍କର ଆଶୀର୍ବାଦ ତୁଲ୍ୟ । ସେ ବିନମ୍ର ଭାବେ ଉକ୍ତ ଧର୍ମୀୟ ଦାୟିତ୍ୱ ସଂପାଦନ କରିଥିଲେ । ଆମେରିକା ରହଣି ମଧ୍ୟରେ ପ୍ରାୟ ବାରୋଟି ରାଜ୍ୟ ଛୁଟି ଦିନରେ ଶ୍ରୀ ମିଶ୍ର ପରିଦର୍ଶନ କରିଥିଲେ । ନିଉର୍ୟକ ଭଳି ପ୍ରଖ୍ୟାତ ନଗରୀ, ୱାସିଙ୍ଗଟନ୍ ଡି.ସି. ଭଳି ଆମେରିକା ପ୍ରେସିଡେ଼ଣ୍ଟଙ୍କ ଆସ୍ଥାନସ୍ଥଳ, ଦକ୍ଷିଣ କାରୋଲିନୀର ସମୁଦ୍ରକୂଳ, ନିଉଜର୍ସି ଭଳି ସୁରମ୍ୟ ଓ ସୁପରିଚିତ ବାସସ୍ଥଳୀରେ ରହିବା ସୁଯୋଗ ମିଳିଥିଲା । ଆମେରିକାର ବିଭିନ୍ନ ସ୍ଥାନରେ ଶ୍ରୀଜଗନ୍ନାଥଙ୍କ ମନ୍ଦିର, ତିରୁପତି ମନ୍ଦିର, ନିଉଜର୍ସିରେ ଏକତ୍ର ବିଭିନ୍ନ ହିନ୍ଦୁ ଦେବଦେବୀଙ୍କ ମନ୍ଦିର ଦର୍ଶନରୁ ଆମେରିକାରେ ଉଦାର ଧର୍ମନିରପେକ୍ଷତାର ପ୍ରମାଣ ମିଳିଲା । ଛଅମାସକାଳ ଆମେରିକାରେ ରହିବା କାଳ ସମାପ୍ତ ହେଲା । ବାସସ୍ଥାନଠାରୁ ସୁଦୂରବର୍ତ୍ତୀ ଚିକାଗୋ ନଗରୀ ଆନ୍ତର୍ଜାତିକ ବିମାନ କେନ୍ଦ୍ରରୁ ଭାରତ ପ୍ରତ୍ୟାବର୍ତ୍ତନ କରିବା ବ୍ୟବସ୍ଥା ପୁଅ କରିଥିଲା । ଚିକାଗୋ ଆନ୍ତର୍ଜାତୀୟ ବିମାନ କେନ୍ଦ୍ରରୁ ଦିଲ୍ଲୀ ପ୍ରାୟ ଷୋଳ ଘଣ୍ଟାର ଯାତ୍ରା । ଦିଲ୍ଲୀ ବାଟ ଦେଇ ସେ ଭୁବନେଶ୍ୱର ପ୍ରତ୍ୟାବର୍ତ୍ତନ କଲେ । ଛଅମାସ କାଳ ଆମେରିକାବାସର ସ୍ମୃତି ଜୀବନରେ ଅବିସ୍ମରଣୀୟ ରହିଲା । ଏହା ପରେ ଭୁବନେଶ୍ୱରରେ ପୁଣି ପୂର୍ବଭଳି ଅବସରପ୍ରାପ୍ତ ଜୀବନର କର୍ମ ସଂପାଦନ ।

**ଠିକଣା :**

ଡକ୍ଟର ଶ୍ରୀନିବାସ ମିଶ୍ର
ଅବସରପ୍ରାପ୍ତ ପ୍ରଫେସର
ପ୍ଲଟ୍ ନଂ.୨୧୨, ସହିଦନଗର, ଭୁବନେଶ୍ୱର-୭
ଟେଲିଫୋନ୍ : ୦୬୭୪-୩୨୯୨୧୦୯/ଦୂରଭାଷ - ୮୭୬୩୦୦୫୬୬୬

**ପ୍ରକାଶିତ ଗ୍ରନ୍ଥ :**

**(କ) 'ସାହିତ୍ୟ କଥା'**

ସାହିତ୍ୟତତ୍ତ୍ୱ ଓ ସମାଲୋଚନା ସାହିତ୍ୟ ସଂପର୍କରେ ପ୍ରବନ୍ଧଗୁଡ଼ିକ 'ସାହିତ୍ୟ କଥା' ଶୀର୍ଷକ ପୁସ୍ତକରେ ସଙ୍କଳିତ ।

(ଖ) 'ଆଧୁନିକ ଓଡ଼ିଆ ଗଦ୍ୟସାହିତ୍ୟ'

ଊନବିଂଶ ଶତାବ୍ଦୀର ଆଦି ଭାଗ ଠାରୁ ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକର ଶେଷ ପର୍ଯ୍ୟନ୍ତ ଆଧୁନିକ ଓଡ଼ିଆ ସାହିତ୍ୟର ଗଦ୍ୟଶିଳ୍ପୀମାନଙ୍କ କୃତିତ୍ୱ ସଂପର୍କରେ ସମୀକ୍ଷାତ୍ମକ ବିଗ୍ଭର ଓ କୃତିତ୍ୱ ନିରୂପଣପୂର୍ବକ ଗ୍ରନ୍ଥ ।

(ଗ) 'ସାରସ୍ୱତ ଅନ୍ୱେଷା'

ସମୀକ୍ଷାତ୍ମକ ବିଗ୍ଭର ଆଲୋଚନା (ପ୍ରକାଶ ଅପେକ୍ଷାରେ)

(ଘ) ସଂପାଦନା :

ଫକୀରମୋହନ ସେନାପତିଙ୍କ ମୂଳ 'ଆତ୍ମଜୀବନୀ'ର ପୁନରୁଦ୍ଧାର ।

(ଙ) ଅନୁବାଦ :

ସାହିତ୍ୟ କ୍ଷେତ୍ରରେ ଅନୁବାଦର ମଧ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ରହିଛି । ମୂଳ ଗ୍ରନ୍ଥର ମୌଳିକତା ଓ ସାହିତ୍ୟିକ ଆବେଦନ ଅନୁବାଦରେ ସଂରକ୍ଷିତ ହେବା ନିମନ୍ତେ ସାବଧାନତାର ଅପେକ୍ଷା ରଖେ ।

ଅନୂଦିତ ଗ୍ରନ୍ଥ :

(୧) ୧୯୬୧ ଖ୍ରୀଷ୍ଟାବ୍ଦରେ ରବୀନ୍ଦ୍ରନାଥ ଠାକୁରଙ୍କ ଜନ୍ମ ଶତବାର୍ଷିକୀ ଉପଲକ୍ଷରେ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଓ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ଡକ୍ଟର ହରେକୃଷ୍ଣ ମହତାବଙ୍କ ନିର୍ଦ୍ଦେଶରେ ରେଭେନ୍ସା କଲେଜର ଅଧ୍ୟକ୍ଷ ଡକ୍ଟର ସଦାଶିବ୍ ମିଶ୍ରଙ୍କ ଦ୍ୱାରା ଅନୁରୁଦ୍ଧ ଓ ଅନୁପ୍ରେରିତ ହୋଇ ଡକ୍ଟର କାହ୍ନୁଚରଣ ମିଶ୍ର, ଅଧ୍ୟାପକ ଚିନ୍ତାମଣି ବେହେରାଙ୍କ ସହିତ ଡକ୍ଟର ହୁମାୟୁନ କବୀରଙ୍କ ଦ୍ୱାରା ରବୀନ୍ଦ୍ରନାଥଙ୍କ ଶତବାର୍ଷିକୀ ଉପଲକ୍ଷରେ ସଙ୍କଳିତ 'Towards Universal Man'ର ଅନୁବାଦ 'ବିଶ୍ୱମାନବ ପଥେ' ନାମରେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ହେଲା । ଏହା ଏକ ସମ୍ମିଳିତ ଉଦ୍ୟମପ୍ରସୂତ ଅନୁବାଦ ସାହିତ୍ୟ କର୍ମ ଓ ସମୟୋପଯୋଗୀ ସାଧୁ ସାରସ୍ୱତ ଉଦ୍ୟମ ।

(୨) ୧୯୮୭-୮୮ମସିହାରେ 'କେନ୍ଦ୍ର ସାହିତ୍ୟ ଏକାଡେମୀ'ଦ୍ୱାରା ଅନୁରୁଦ୍ଧ ହୋଇ ପ୍ରାୟ ୪୦୦ ପୃଷ୍ଠା ସମ୍ବଳିତ ବଙ୍ଗୀୟ ପ୍ରଖ୍ୟାତ ପ୍ରଫେସର ସୁକୁମାର ସେନ୍‌ଙ୍କ ରଚନା 'History of Bengali Literature' ଶ୍ରୀ ମିଶ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୁବାଦ ହୋଇ 'ବଙ୍ଗଳା ସାହିତ୍ୟର ଇତିହାସ' ନାମରେ ପ୍ରକାଶିତ । ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ବିଭିନ୍ନ ସାହିତ୍ୟର ଇତିହାସ ଗ୍ରନ୍ଥଗୁଡ଼ିକ ମଧ୍ୟରେ ଏହା ଏକ ସୁବୃହତ୍ ସୃଷ୍ଟି କର୍ମ ।

(୩) 'ନେସେନାଲ ବୁକ୍ ଟ୍ରଷ୍ଟ' ଦ୍ୱାରା ଅନୁରୁଦ୍ଧ ହୋଇ Varant Moonଙ୍କ ଦ୍ୱାରା ରଚିତ ଇଂରେଜୀ ଜୀବନୀ ଗ୍ରନ୍ଥ 'ବାବା ସାହେବ ଆମ୍ବେଦକର' ଓଡ଼ିଆରେ ଭାଷାନ୍ତର କରିଥିଲେ । ଏହା ନେସନାଲ ବୁକ୍ ଟ୍ରଷ୍ଟ ଦ୍ୱାରା ପ୍ରକାଶିତ ।

(୪) ଭାରତର ରାଷ୍ଟ୍ରପତି ପ୍ରସିଦ୍ଧ ବିଦ୍ୱାନ୍, ଦାର୍ଶନିକ ଓ ସୁଲେଖକ ଡକ୍ଟର ରାଧାକ୍ରିଷ୍ଣନ୍‌ଙ୍କ 'Hindu View of Life' 'ହିନ୍ଦୁ ଜୀବନ ଦୃଷ୍ଟି' ନାମରେ ତାଙ୍କଦ୍ୱାରା ଅନୂଦିତ ହୋଇ କଟକର 'ବିଦ୍ୟାପୁରୀ' ପ୍ରକାଶନ ସଂସ୍ଥା ପକ୍ଷରୁ ୨୦୧୩ ମସିହାରେ ପ୍ରକାଶିତ ହୋଇଅଛି ।

(୫) ଡକ୍ଟର ରାଧାକ୍ରିଷ୍ଣନ୍‌ଙ୍କର ଅନ୍ୟ ଏକ ଉପାଦେୟ ପୁସ୍ତକ 'Religion and Culture' 'ଧର୍ମ ଓ ସଂସ୍କୃତି' ନାମରେ ତାଙ୍କଦ୍ୱାରା ଅନୂଦିତ ହୋଇ ପ୍ରକାଶନ ଅପେକ୍ଷାରେ ଅଛି ।

(୬) ୨୦୧୪ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀ 'Perennial Vivekananda' ଶୀର୍ଷକ ଏକ ସୁବୃହତ୍ ପ୍ରାୟ ତିନିଶହ ପୃଷ୍ଠାର ଇଂରେଜୀ ଗ୍ରନ୍ଥର ଓଡ଼ିଆ ଭାଷାନ୍ତର ଦାୟିତ୍ୱ ଶ୍ରୀ ମିଶ୍ରଙ୍କୁ ଦେଇଥିଲେ । ପ୍ରାୟ ଦଶମାସ କାଳ କଠିଣ ପରିଶ୍ରମ କରି ଏହି ଅନୁବାଦ କାର୍ଯ୍ୟ ସମାପ୍ତ କଲେ । ଆମେରିକାର ବିଭିନ୍ନ ସ୍ଥାନରେ ବିବେକାନନ୍ଦ ହିନ୍ଦୁଧର୍ମ ଓ ଦର୍ଶନର ମହତ୍ତ୍ୱ ସଂପର୍କରେ ଦେଇଥିବା ଭାଷଣଗୁଡ଼ିକୁ ଜଣେ ଇଂରେଜ୍ ଭାଷଣ ଲିପିବଦ୍ଧ କରିବା ଆଗ୍ରହୀ ବ୍ୟକ୍ତିଙ୍କ ଦ୍ୱାରା ଏହା ଅନୁଲିଖିତ ଓ ସଂରକ୍ଷିତ ହୋଇ ପ୍ରକାଶିତ ହୋଇଥିଲା । ଏହି କଷ୍ଟସାଧ ଦାୟିତ୍ୱ ଏବେ ସଂପୂର୍ଣ୍ଣ ସଂପାଦିତ ହୋଇ ପ୍ରକାଶନ ନିମନ୍ତେ ସାହିତ୍ୟ ଏକାଡେମୀକୁ ପ୍ରେରିତ ହୋଇଛି । ଶ୍ରୀ ମିଶ୍ର ପାଞ୍ଚବର୍ଷ ନିମନ୍ତେ କେନ୍ଦ୍ର ସାହିତ୍ୟ ଏକାଡେମୀର ଓଡ଼ିଆ ଭାଷା ପରାମର୍ଶଦାତା କମିଟିର ସଭ୍ୟ ଥିଲେ । ୧୯୮୮ ମସିହାରେ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ପ୍ରଫେସର ଡକ୍ଟର ଶିଶିର କୁମାର ଦାସଙ୍କୁ କେନ୍ଦ୍ର ସାହିତ୍ୟ ଏକାଡେମୀ ଊନବିଂଶ ଶତାବ୍ଦୀର ଭାରତୀୟ ସାହିତ୍ୟର ଇତିହାସ ରଚନା ଦାୟିତ୍ୱ ଦେଇଥିଲେ । ଓଡ଼ିଆ ଭାଷା ଓ ସାହିତ୍ୟର ତଥ୍ୟ ପ୍ରଦାନପୂର୍ବକ ତାଙ୍କୁ ସହାୟତା ଦେବା ନିମନ୍ତେ ଶ୍ରୀ ମିଶ୍ରଙ୍କୁ ଦାୟିତ୍ୱ ପ୍ରଦାନ କରିଥିଲେ । ପ୍ରଫେସର ଦାସ ଇଂରେଜୀରେ ପ୍ରସ୍ତୁତ କରିଥିବା ଓଡ଼ିଆ ଭାଷା ଓ ସାହିତ୍ୟର ସମୀକ୍ଷାଧର୍ମୀ ଷାଠିଏଟି ପ୍ରଶ୍ନର ଯଥାଯଥ ଉତ୍ତରଭିତ୍ତିକ ଶ୍ରି ମିଶ୍ର ପ୍ରଫେସର ଦାସଙ୍କୁ ତଥ୍ୟଗତ ସହାୟତା ଦେଇଥଲେ । ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ପ୍ରଫେସର ଦାସଙ୍କ ଗ୍ରନ୍ଥରେ ତାଙ୍କ ପ୍ରଦତ୍ତ ଏକାଡେମୀକ ସହାୟତା ଯଥାଯଥ ଭାବେ ସ୍ୱୀକୃତ ହୋଇଛି ।

ଉଲ୍ଲେଖଯୋଗ୍ୟ ଯେ ଡକ୍ଟର ମିଶ୍ରଙ୍କ ଅଧୀନରେ ଗବେଷଣା କରି ଆଠ ଜଣ ଡକ୍ଟରେଟ୍ ଓ ଛଅ ଜଣ ଡି.ଲିଟ୍. ଉପାଧି ପାଇଛନ୍ତି ।

ଏ ସକଳ ତାଙ୍କ ସାହିତ୍ୟିକ, ସମୀକ୍ଷାତ୍ମକ, ଅନୁବାଦମୂଳକ ଓ ସହଯୋଗଧର୍ମୀ ଶ୍ରଦ୍ଧାଯୁକ୍ତ ସାହିତ୍ୟ ସାଧନା ଓ ସହାୟତାର ଫଳଶ୍ରୁତି । ଯଥାଯଥ ପ୍ରଚାର ଅଭାବରୁ ତାଙ୍କର ଏ ଦୀର୍ଘ ଅକୁଣ୍ଠିତ ସାରସ୍ୱତ ସହାୟତା ଓ ଉଦ୍ୟମ ଯଥାର୍ଥ ସ୍ୱୀକୃତି ଲାଭ କରିପାରି ନାହିଁ; କିନ୍ତୁ ଏହି ନିରଳସ ସାଧକ ତାଙ୍କର ସର୍ଜନା କର୍ମରେ ନିରତ ବ୍ରତୀ ରହିଛନ୍ତି ଜଣେ କର୍ମଯୋଗୀ ସ୍ରଷ୍ଟାଭାବରେ, କୌଣସି ପୁରସ୍କାର, ସମ୍ମାନ ଓ ସମ୍ବର୍ଦ୍ଧନାକୁ ଅପେକ୍ଷା ନ କରି ।



# ସ୍ୱାଭିମାନୀ ପ୍ରାବନ୍ଧିକ
# ଡକ୍ଟର ଧରଣୀଧର ପାଣିଗ୍ରାହୀ

**ସୁଜାତା ମହାପାତ୍ର**

୧୯୩୫ ମସିହା ଜୁଲାଇ ୫ ତାରିଖ । ଆଷାଢ଼ ଶୁକ୍ଳ ପଞ୍ଚମୀ (ହେରା ପଞ୍ଚମୀ) । ନବଦିନ ଘୋଷଯାତ୍ରାରେ ଯାଇ ଶ୍ରୀ ଜଗନ୍ନାଥ ଥାଆନ୍ତି ଗୁଣ୍ଡିଚ୍ଚା ମନ୍ଦିରର ଆଡ଼ପ ମଣ୍ଡପରେ । ସେଇ ପବିତ୍ର ଦିବସରେ ଜନ୍ମଲାଭ କରିଥିଲେ ଗଡ଼ଜାତ ମୂଳକର ଏକ ଅଖ୍ୟାତ ପଲ୍ଲୀରେ ଓଡ଼ିଶାର ପରବର୍ତ୍ତୀ କାଳର ଜଣେ ଲବ୍ଧପ୍ରତିଷ୍ଠ ଲେଖକ, ଅର୍ଥନୀତିଜ୍ଞ ଓ ପ୍ରଥିତଯଶା ଅଧ୍ୟାପକ ଡକ୍ଟର ଧରଣୀଧର ପାଣିଗ୍ରାହୀ । ଏହି କ୍ଷୁଦ୍ର ପଲ୍ଲୀ ଗ୍ରାମଟି ଥିଲା ତତ୍‌କାଳୀନ ଏକ କ୍ଷୁଦ୍ର ଦେଶୀୟ ରାଜ୍ୟ ହିନ୍ଦୋଳର ଏକ ସୀମାନ୍ତ ଗ୍ରାମ । ତାଳଚେର-ପୁରୀ ରେଳପଥର ମେରାମଣ୍ଡଳି ରେଳଷ୍ଟେସନ୍ ନିକଟବର୍ତ୍ତୀ ଏଇ ଗାଆଁଟି । ଏବେ ୫ ନମ୍ବର ଜାତୀୟ ରାଜପଥରୁ ସେ ଗାଆଁ ପର୍ଯ୍ୟନ୍ତ ପକ୍କା ରାସ୍ତା ହେଲାଣି । କିନ୍ତୁ ସେତେବେଳେ ମଣିଷଚଲା ରାସ୍ତା ବିନା ରାସ୍ତାଘାଟ କିଛି ନ ଥିଲା । ସେଇ ଗାଆଁର ଏକ ମଧ୍ୟବିତ୍ତ କୁଳୀନ ପରିବାରରେ ଜନ୍ମ ନେଇଥିଲେ ଧରଣୀଧର । ପିତା ସ୍ୱର୍ଗତ ଲିଙ୍ଗରାଜ ପାଣିଗ୍ରାହୀ ଓ ମାତା ସ୍ୱର୍ଗତା ଶ୍ରୀମତୀ ଦେବୀଙ୍କ ତିନି ସନ୍ତାନଙ୍କ ମଧ୍ୟରେ ସେ ଥିଲେ ସର୍ବକନିଷ୍ଠ ସନ୍ତାନ । ମାତ୍ର ତିନି ବର୍ଷ ବୟସର ହୋଇଥିବା ବେଳେ ସେ ପିତାଙ୍କୁ ହରାଇଥିଲେ । ସ୍ନେହମୟୀ ଜନନୀ ସେତେବେଳେ ସାହସ ବାନ୍ଧି ନିଜ ସନ୍ତାନସନ୍ତତିଙ୍କ ପାଇଁ ନିଛକ ବାସ୍ତବତାର ସମ୍ମୁଖୀନ ହେବାକୁ ଆଗେଇ ଆସିଥିଲେ ଏବଂ ପିଲାମାନଙ୍କୁ ଜୀବନରେ ଥଇଥାନ କରିଥିଲେ ।

ଓଡ଼ିଶାର ଶିକ୍ଷା ଓ ବୌଦ୍ଧିକ ଜଗତରେ ଡକ୍ଟର ଧରଣୀଧର ପାଣିଗ୍ରାହୀ ଏକ ସୁପରିଚିତ ନାମ । ଯଶସ୍ୱୀ ଅଧ୍ୟାପକ, ସୁନାମଧନ୍ୟ ଶିକ୍ଷାବିତ୍, ସମସାମୟିକ ଗୋଷ୍ଠୀର ଲବ୍ଧପ୍ରତିଷ୍ଠ ଲେଖକ ଏବଂ ସୂକ୍ଷ୍ମବିଚାରଧାରା ତଥା ତୀକ୍ଷ୍ଣ ଦୂରଦୃଷ୍ଟିସମ୍ପନ୍ନ ପ୍ରତିଭାବାନ୍ ଅର୍ଥନୀତିଜ୍ଞ ଡକ୍ଟର ପାଣିଗ୍ରାହୀ ଓଡ଼ିଆ ଓ ଇଂରାଜୀ ଭାଷାରେ ବହୁ ପୁସ୍ତକର ପ୍ରଣେତା ।

ପ୍ରଜ୍ଞା ଓ ଚିନ୍ତାଶୀଳତାର ସମନ୍ୱିତ ପ୍ରତିରୂପ ହେଉଛନ୍ତି ଡକ୍ଟର ଧରଣୀଧର ପାଣିଗ୍ରାହୀ । ଅଧ୍ୟାପନାକୁ ସେ କେବଳ ବୃତ୍ତି ରୂପେ ଗ୍ରହଣ କରି ନ ଥିଲେ, ଏହା ଥିଲା ତାଙ୍କର ପ୍ରବୃତ୍ତି । ଅଧ୍ୟାପନା କେବଳ ତାଙ୍କ ଜୀବିକା ନ ଥିଲା, ଥିଲା ତାଙ୍କ ଜୀବନ । ସମଗ୍ର ଅନ୍ତଃକରଣରେ ସେ ବାଣୀ ଆରାଧନାରେ ବ୍ରତୀ ହୋଇଛନ୍ତି ଜୀବନବ୍ୟାପୀ । ଅଧ୍ୟାପନା କାଳରେ ସେ ଅଶେଷ ପ୍ରଶଂସା ଅର୍ଜନ କରିଛନ୍ତି । ତାଙ୍କର ଚମତ୍କାର ଅଧ୍ୟାପନା ଶୈଳୀ ଛାତ୍ର ମହଲରେ ତାଙ୍କୁ ଖୁବ୍ ଲୋକପ୍ରିୟ କରିପାରିଥିଲା । ସବୁଠି ସେ ଥିଲେ ଆକର୍ଷଣର ବିନ୍ଦୁ । ଯିଏ ଥରେ ତାଙ୍କ ଛାତ୍ର ହେବାର ସୁଯୋଗ ପାଇଛି ସେ ତାଙ୍କୁ ଜୀବନରେ କେବେ ଭୁଲି ନାହିଁ । ତାଙ୍କଠାରୁ ଲବ୍ଧଜ୍ଞାନ ଜୀବନର ଅଭୁଲା ସ୍ମୃତି ହୋଇ ରହିଯାଇଛି । ଏହି ଆଦର୍ଶ ଗୁରୁ ଜଟିଳ ବିଷୟଗୁଡ଼ିକୁ ଏପରି ସରଳ ବିଶ୍ଳେଷଣ କରନ୍ତି ଯେ ତାହା ସହଜରେ ଛାତ୍ରମାନଙ୍କ ମନକୁ ଛୁଇଁପାରେ । ତାଙ୍କ ବଳିଷ୍ଠ ନିର୍ଦ୍ଦେଶନାରେ କେତେଜଣ ଅଧ୍ୟାପକ/ଅଧ୍ୟାପିକା ଉଚ୍ଚତର ଗବେଷଣା କରି ପି.ଏଚ୍.ଡି. ଉପାଧି ପ୍ରାପ୍ତ ହୋଇଛନ୍ତି । ଅଧ୍ୟାପନାର ଚମତ୍କାରିତା, ପାଣ୍ଡିତ୍ୟ, ମନନଶୀଳତା, ନିଷ୍ଠାପର କର୍ମପ୍ରବଣତା ଓ ନିଜସ୍ୱ ପ୍ରତିଭାରେ ଛାତ୍ର ସମାଜର ହୃଦୟ ଜୟ କରିବାର ଅମୂଲ୍ୟ ସିଦ୍ଧିର ଅଧିକାରୀ ଏହି ଯଶସ୍ୱୀ ଅଧ୍ୟାପକ ଆଜି ବି ତାଙ୍କ ଛାତ୍ରଛାତ୍ରୀଙ୍କ ହୃଦୟରେ ଶ୍ରଦ୍ଧାର ଆସନ ଅଳଙ୍କୃତ କରି ବସିଛନ୍ତି ।

ଡକ୍ଟର ପାଣିଗ୍ରାହୀ ୧୯୫୩ ମସିହାରେ ତାଳଚେର ଯୁବରାଜ ହାଇସ୍କୁଲରୁ ମାଟ୍ରିକ୍ୟୁଲେସନ ଏବଂ ରେଭେନ୍ସା କଲେଜରୁ ୧୯୫୫ରେ ଆଇ.ଏ., ୧୯୫୭ରେ ବି.ଏ. (ଅନର୍ସ) ଓ ୧୯୫୯ରେ ଅର୍ଥନୀତିରେ ସ୍ନାତକୋତ୍ତର ଉପାଧି ଲାଭ କରିଥିଲେ । ପରବର୍ତ୍ତୀ କାଳରେ ୧୯୮୨ ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡି. ଡିଗ୍ରୀ ଲାଭ କରିଥିଲେ ।

କଲେଜ ସ୍ତରର ଛାତ୍ରଛାତ୍ରୀଙ୍କ ପାଇଁ ସେ ପ୍ରାୟ ୨୫ ଖଣ୍ଡ ଉପାଦେୟ ପୁସ୍ତକ ରଚନା କରିଛନ୍ତି । ତାଙ୍କ ଅର୍ଥନୀତି ସାହିତ୍ୟ ସମ୍ଭାର ମଧ୍ୟରେ ରହିଛି :

(୧) ଆନ୍ତର୍ଜାତିକ ଅର୍ଥନୀତି
(୨) ଅର୍ଥନୈତିକ ବିକାଶ
(୩) ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଓ ଅର୍ଥନୈତିକ ବିକାଶ
(୪) Centre-State Financial Relations in India
(୫) ରାଜନୀତିଜ୍ଞଙ୍କ ଭାରତବର୍ଷ
(୬) ଆର୍ଥନୀତିକ ଭାରତ
(୭) ଆମ ଅର୍ଥନୀତି
(୮) ଭାରତ ବିକାଶ ପରିକ୍ରମା

ପ୍ରଥମ ତିନିଗୋଟି ଗ୍ରନ୍ଥ ହେଲା ତିନିଗୋଟି ବିଶ୍ୱବିଖ୍ୟାତ ଗ୍ରନ୍ଥର ଓଡ଼ିଆ ଅନୁବାଦ । ଚତୁର୍ଥ ପୁସ୍ତକଟି ହେଲା ଦେଶ-ବିଦେଶରେ ବିଶେଷଭାବେ ଆଦୃତ ହୋଇଥିବା ତାଙ୍କ ଗବେଷଣା ନିସୃତ ନିବନ୍ଧ ।

ସ୍ନାତକ ଶ୍ରେଣୀର ଛାତ୍ର ଥିଲାବେଳେ ଲେଖକ ଜୀବନ ଆରମ୍ଭ ହୁଏ । ଅବଶ୍ୟ ଇଣ୍ଟରମେଡ଼ିଏଟ୍ ଶ୍ରେଣୀର ଛାତ୍ର ଥିବାବେଳେ ରେଭେନ୍ସା କଲେଜର ପୂର୍ବ ଛାତ୍ରାବାସର ମୁଖପତ୍ର 'ଜାଗରଣ'ରେ ସେହି ଶିରୋନାମାରେ ତାଙ୍କର ପ୍ରଥମ କବିତା ପ୍ରକାଶ ପାଇଥିଲା । ସ୍ନାତକ ଶ୍ରେଣୀରେ ଅଧ୍ୟୟନ କଲାବେଳେ ସେ ଅନେକ କବିତା ରଚନା କରିଥିଲେ । ସେଥି ମଧ୍ୟରୁ 'ସାକ୍ଷୀଗୋପାଳ', 'ଭଙ୍ଗାରିକା', 'ଧବଳେଶ୍ୱର' ଶୀର୍ଷକ ତିନିଗୋଟି ଦୀର୍ଘ କବିତା 'କିଶଳୟ', 'ନିର୍ଭୀକ', ଓ 'ଉର୍ମି'ରେ ପ୍ରକାଶିତ ହୋଇ ପାଠକ ମହଲରେ ବେଶ୍ ଆଦୃତ ହୋଇଥିଲା । ଏହା ବ୍ୟତୀତ ତାଙ୍କର 'କୋଣାର୍କ', 'କୋଣାର୍କେ', 'ଅର୍ଘ୍ୟଥାଳି' ଓ 'ପୂଜାଫୁଲ' ଆଦି ଅନେକ ଗୁଡ଼ିଏ କବିତା ସମାଜର ଗୋପବନ୍ଧୁ ବିଶେଷାଙ୍କ 'ନବଜୀବନ' ଓ 'କିଶଳୟ' ଆଦି ପତ୍ରିକାରେ ପ୍ରକାଶିତ ହୋଇ ଆଦରଲାଭ କରିଥିଲା । କବିତା ରଚନା ସହିତ ପ୍ରବନ୍ଧ ରଚନା କ୍ଷେତ୍ରରେ ମଧ୍ୟ ପ୍ରବେଶ କରି କଲେଜ ଜୀବନରୁ ହିଁ ସେ ଜଣେ ସୁଲେଖକ ଓ ପ୍ରାବନ୍ଧିକ ହିସାବରେ ଜଣାଶୁଣା ହୋଇଗଲେ ଏବଂ ଛାତ୍ର ଓ ଅଧ୍ୟାପକ ମହଲରେ ଚର୍ଚ୍ଚିତ ହୋଇଥିଲେ ।

ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନ କଲାବେଳେ ଘଟଣାକ୍ରମରେ ତାଙ୍କର ସାକ୍ଷାତ ହୁଏ 'ଉତ୍କଳ ସାହିତ୍ୟ'ର ସମ୍ପାଦକ ସୁନନ୍ଦ କରଙ୍କ ସହିତ । ତାଙ୍କ ପ୍ରବନ୍ଧ, ସମାଲୋଚନା ଓ ଚଳନ୍ତି ସାମାଜିକ ଘଟଣାବଳୀର ସମୀକ୍ଷାରେ ଆକୃଷ୍ଟ ହୋଇଥିବା ଶ୍ରୀ କର ତାଙ୍କୁ ପ୍ରବନ୍ଧ ଲେଖାରେ ମନୋନିବେଶ କରିବାକୁ ଅନୁରୋଧ କରନ୍ତି । ତାଙ୍କ ମତକୁ ସମ୍ମାନ ଜଣାଇ ସେ 'ଉତ୍କଳ ସାହିତ୍ୟ'ରେ ଲେଖି ଚାଲନ୍ତି ଆର୍ଥନୀତିକ-ରାଜନୈତିକ-ସାମାଜିକ ସମସ୍ୟା ଭିତ୍ତିକ ପ୍ରବନ୍ଧ ଓ ସମୀକ୍ଷା । କେତେବେଳେ କେମିତି ମନୋରଞ୍ଜନ ପାଇଁ ସାମୟିକ କବିତା ରଚନା କଲେ ବି କବିତା କ୍ଷେତ୍ରରୁ ସେ ବିଦାୟ ନିଅନ୍ତି ।

ଲେଖକ ଜୀବନର ଆଦ୍ୟ ପର୍ଯ୍ୟାୟରେ ଏହି ପୃଷ୍ଠଭୂମି ନେଇ ସେ ରେଭେନ୍ସା କଲେଜ ଛାଡ଼ନ୍ତି ୧୯୫୯ରେ । ତା'ପରେ ସେ ଆଉ ପଛକୁ ଫେରି ଚାହିଁ ନାହାଁନ୍ତି । ତାଙ୍କ କଲମରୁ ନିସୃତ ହେଲା ଧାରାବାହିକ ପ୍ରବନ୍ଧ ଓ ସମାଲୋଚନା । ୬୦ ଦଶକର ପ୍ରାରମ୍ଭରୁ ଅଦ୍ୟାବଧି ବିଭିନ୍ନ ସମ୍ବାଦପତ୍ର ଓ ପତ୍ରପତ୍ରିକାରେ ପ୍ରକାଶିତ ତାଙ୍କୁ ବହୁ ମନନଶୀଳ ନିବନ୍ଧ ଓ ସ୍ତମ୍ଭଲେଖ ପାଇଁ ତାଙ୍କୁ ମିଳିଛି ବିପୁଳ ପାଠକୀୟ ଶ୍ରଦ୍ଧା ଓ ସାରସ୍ୱତ ସମ୍ମାନ । ଦୀର୍ଘ ପାଞ୍ଚ ଦଶନ୍ଧି ଧରି (୧୯୬୦-୨୦୧୦) ସେ ଥିଲେ ଦୈନିକ 'ସମାଜ'ର ଜଣେ ଲବ୍ଧପ୍ରତିଷ୍ଠ ଲେଖକ ।

'ଧରିତ୍ରୀ' ଦୈନିକ ସମ୍ବାଦପତ୍ର ପ୍ରକାଶ ପାଇବା ପରେ ଗୋଟିଏ ଦଶନ୍ଧିରୁ ଅଧିକ ସମୟକାଳ ପ୍ରତ୍ୟେକ ରବିବାର ସଂସ୍କରଣରେ ସେ ଏକ ଅର୍ଥନୈତିକ ସମୀକ୍ଷା ଲେଖୁଥିଲେ । ଅନୁରୂପ ଭାବେ ବ୍ରହ୍ମପୁରରୁ ପ୍ରକାଶ ପାଉଥିବା ଦୈନିକ ସମ୍ବାଦପତ୍ର 'ଅନୁପମ ଭାରତ'ର ଜନ୍ମଦିନରୁ ସେ ତା'ର ଜଣେ ପ୍ରମୁଖ ସ୍ତମ୍ଭକାର । ଏହା ବ୍ୟତୀତ 'ପ୍ରଗତିବାଦୀ', ସନ୍ ଟାଇମସ୍, ଯୋଜନା, ମହାର୍ଣ୍ଣବ ଓ ବିକଳ୍ପ ବିଗ୍ରହ ପରି ଅନ୍ୟାନ୍ୟ ଅନେକ ପତ୍ରିକାରେ ତାଙ୍କର ପ୍ରବନ୍ଧ ଓ ଆଲୋଚନା ନିୟମିତଭାବେ ପ୍ରକାଶ ପାଇଆସିଛି ।

ଭୁବନେଶ୍ୱରରୁ ପ୍ରକାଶ ପାଉଥିବା ଏକ ସମ୍ଭ୍ରାନ୍ତ ସାପ୍ତାହିକୀ 'ଜନମତ ପରିକ୍ରମା'ର ଉପଦେଷ୍ଟାମଣ୍ଡଳୀର ସେ ଜଣେ ସଦସ୍ୟ ଏବଂ ଏହି ପତ୍ରିକାର ପ୍ରଥମ ପ୍ରକାଶନ କାଳରୁ ଦୀର୍ଘ ଦୁଇ ଦଶନ୍ଧିରୁ ଊର୍ଦ୍ଧ୍ୱ କାଳ ହେଲା ଏହି ପତ୍ରିକାରେ ତାଙ୍କର ପ୍ରବନ୍ଧ ଓ ଆଲୋଚନା ପ୍ରକାଶ ପାଉଛି । ଚଳନ୍ତି ଅର୍ଥନୈତିକ ସମସ୍ୟାବଳୀ ଉପରେ ରଚିତ ବହୁ ସଂଖ୍ୟକ ପ୍ରବନ୍ଧ ଓ ଓଡ଼ିଶାର ସୁପରିଚିତ ଓ ପ୍ରତିଷ୍ଠିତ ଅଧିକାଂଶ ସମ୍ବାଦପତ୍ର ଓ ପତ୍ରପତ୍ରିକାରେ ପ୍ରକାଶିତ ତାଙ୍କର ଧାରାବାହିକ ଆଲୋଚନା ଏହି ନିରଳସ କର୍ମଯୋଗୀଙ୍କ ପାଇଁ ଆଣି ଦେଇଥିଲା ଅନେକ ଖ୍ୟାତି ଓ ସମ୍ମାନ ।

୧୯୯୪ ଜାନୁୟାରୀରେ ନିଜର କର୍ମକ୍ଷେତ୍ରରୁ ଅବସର ଗ୍ରହଣ କରିବା ପରେ ଆଦର୍ଶବାଦୀ ଡକ୍ଟର ପାଣିଗ୍ରାହୀ ସାହିତ୍ୟ ସାଧନାରେ ବ୍ରତୀ ରହିଲେ ଏବଂ ବିଗତ ଦୁଇ ଦଶନ୍ଧି ମଧ୍ୟରେ ଓଡ଼ିଆ ପାଠକମାନଙ୍କୁ ଉପହାର ଦେଲେ ୧୫ଟି ମୂଲ୍ୟବାନ୍ ଗ୍ରନ୍ଥ । ପ୍ରତ୍ୟେକଟି ଗ୍ରନ୍ଥରେ ସମାଜ ପ୍ରତି ଏକ ନିର୍ଦ୍ଦିଷ୍ଟ ସନ୍ଦେଶ ରହିଛି ଏବଂ ବିଦଗ୍ଧ ପାଠକେ ତାକୁ ଅଧ୍ୟୟନ କରି ଅଭିଭୂତ ହେବା ଅବଶ୍ୟମ୍ଭାବୀ । ତିନିଜଣ ପ୍ରଖ୍ୟାତ ବ୍ୟକ୍ତିତ୍ୱଙ୍କ ଆତ୍ମଜୀବନୀକୁ ସେ ଅନୁବାଦ କରିଛନ୍ତି । ମହାତ୍ମାଗାନ୍ଧୀଙ୍କ ପଟ୍ଟଶିଷ୍ୟା ମାଡ଼େଲିନ୍ ସ୍ଲେଡ୍ ଓରଫ୍ ମୀରାବେନଙ୍କ ଆତ୍ମଜୀବନୀ 'Sprit's Pilgrimage' (ତୀର୍ଥଭୂମି ଭାରତ), ଦଲାଇ ଲାମାଙ୍କ ଆତ୍ମଜୀବନୀ 'Freedom in Exile' (ନିର୍ବାସିତର ଆତ୍ମକଥା) ଏବଂ ଡକ୍ଟର କରଣସିଂହଙ୍କ ଆତ୍ମଜୀବନୀ । ଡକ୍ଟର କରଣ ସିଂହଙ୍କ ଆତ୍ମଜୀବନୀ ପୁସ୍ତକ ୨୦୦୯ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଥିଲା ଏବଂ ଏହାର ସରଳ, ସୁନ୍ଦର ଓ ସାବଲୀଳ ଅନୁବାଦ ଯୋଗୁଁ କୌଣସି ମୂଳ ଓ ମୌଳିକ ଉପନ୍ୟାସ ପାଠ କଲାପରି ପ୍ରତୀୟମାନ ହେଉଥିବା ବହୁ ସାହିତ୍ୟିକ ମତପୋଷଣ କରିଥିଲେ ।

ତିନିଗୋଟି ଆତ୍ମଜୀବନୀ ବ୍ୟତୀତ ଆଉ ତିନିଗୋଟି ବିଖ୍ୟାତ ପୁସ୍ତକର ମଧ୍ୟ ସେ ଅନୁବାଦ କରିଛନ୍ତି । ତା' ମଧ୍ୟରୁ ଗୋଟିଏ ହେଲା ଡକ୍ଟର ପଲ୍ ବ୍ରୁଣ୍ଟନଙ୍କର ବହୁଚର୍ଚ୍ଚିତ 'A search in secret India' (ଅଦୃଷ୍ଟ ଭାରତ ସନ୍ଧାନେ), ବିଶିଷ୍ଟ ସାମ୍ବାଦିକ

ଏମ୍.ଭି.କାମାଥ୍‌ଙ୍କର 'Philosophy of life & death' (ଜୀବନ-ମୃତ୍ୟୁ ଦର୍ଶନ), ଏବଂ ଖ୍ୟାତନାମା ସୁପ୍ରିମକୋର୍ଟର ପୂର୍ବତନ ବିଚାରପତି ଜଷ୍ଟିସ୍ ଭି.ଆର୍.କ୍ରିଷ୍ଣା ଆୟାରଙ୍କର 'Death & After' ର ଅନୁବାଦ 'ମୃତ୍ୟୁ ପରେ ।'

ଜୀବନୀ ସାହିତ୍ୟ କ୍ଷେତ୍ରରେ ସେ ଓଡ଼ିଆ ପାଠକମାନଙ୍କୁ ଉପହାର ଦେଇଛନ୍ତି ପାଞ୍ଚଗୋଟି ଅମୂଲ୍ୟ ଜୀବନୀ । ସେମାନଙ୍କ ମଧ୍ୟରୁ ଚାରିଜଣ ବିଶ୍ୱବିଦିତ ଯାହାଙ୍କ ଉତ୍ତୁଙ୍ଗ ବ୍ୟକ୍ତିତ୍ୱ ଓ ଆଦର୍ଶ ସମଗ୍ର ବିଶ୍ୱର ଆଖି ଝଲସାଇ ଦେଇଛି । ଜଣେ ହେଲେ ଦକ୍ଷିଣ ଆଫ୍ରିକାର ଗାନ୍ଧୀ ରୂପେ ପରିଚିତ ନେଲ୍‌ସନ୍ ମାଣ୍ଡେଲା, ଆଉ ଜଣେ ହେଲେ ଆମେରିକାର ଗାନ୍ଧୀ ରୂପେ ପରିଚିତ ଜୁନିଅର୍ ମାର୍ଟିନ୍ ଲୁଥର କିଙ୍ଗ୍ ଏବଂ ଅନ୍ୟ ଦୁଇଜଣ ହେଲେ ସ୍ୱକୀୟ ପ୍ରଜ୍ଞା, ପ୍ରତିଭା, ଆଦର୍ଶ, ବିଦ୍‌ବତ୍ତା ଓ ପ୍ରଶାସନିକ କୌଶଳ ପାଇଁ ଖ୍ୟାତ ଚକ୍ରବର୍ତ୍ତୀ ରାଜଗୋପାଳଚାରୀ ଓ ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍ । ଆଉ ଜଣେ ଅପେକ୍ଷାକୃତ ଅବହେଳିତ, ଅଜ୍ଞାତ ଓ ବିସ୍ମୃତ ଚରିତ୍ରଙ୍କୁ ବିସ୍ମୃତି ଗର୍ଭରୁ ଉଦ୍ଧାର କରି ତାଙ୍କର ମହତ୍ତ୍ୱ ଓ ମହାନତା ପ୍ରତିପାଦନ କରିବାରେ ସେ ସଫଳକାମ ହୋଇଛନ୍ତି । ସେ ଚରିତ୍ରଟି ହେଲା ପରିସ୍ଥିତି ଚକ୍ରରେ ବିପଥଗାମୀ ହୋଇଥିବା ଜଣେ ପ୍ରଚଣ୍ଡ ସତ୍ୟାଗ୍ରହୀ, ଦେଶପ୍ରେମୀ, ଓ ଦକ୍ଷିଣ ଆଫ୍ରିକାରେ ବର୍ଣ୍ଣବିଦ୍ୱେଷ ବିରୋଧରେ ଗାନ୍ଧୀଙ୍କ ଐତିହାସିକ ଆନ୍ଦୋଳନର ଜଣେ ଆଗଧାଡ଼ିର ସତ୍ୟାଗ୍ରହୀ ତାଙ୍କ ଜ୍ୟେଷ୍ଠପୁତ୍ର ହରିଲାଲ୍ ଗାନ୍ଧୀ । ଗାନ୍ଧୀଙ୍କ ଭାଷାରେ ତାଙ୍କ ଚାରି ପୁତ୍ରଙ୍କ ମଧ୍ୟରେ ସେ ଥିଲେ ଏକ ଉଜ୍ଜ୍ୱଳ ରତ୍ନ ଓ ସଚ୍ଚା ସତ୍ୟାଗ୍ରହୀ । କିନ୍ତୁ ପରିସ୍ଥିତି ଚକ୍ରରେ ଏହି ମହାନ୍ ସତ୍ୟାଗ୍ରହୀ ବିଦ୍ରୋହୀ ସାଜି ଦୁଃଖ ଦୈନ୍ୟକୁ ଜୀବନ ରୂପେ ଆଦରି ନେଲେ ଏବଂ ଅଲୋଡ଼ା ଅଖୋଜା ହୋଇ ଦୀନହୀନ ଅବସ୍ଥାରେ ଶେଷ-ନିଃଶ୍ୱାସ ତ୍ୟାଗ କଲେ । ତାଙ୍କରି ଅକୁହା କାହାଣୀକୁ ଲୋକଲୋଚନକୁ ଆଣିଛନ୍ତି ଡକ୍ଟର ପାଣିଗ୍ରାହୀ ତାଙ୍କ 'ପଥହରା' ପୁସ୍ତକରେ, ଯାହା ଅନେକଙ୍କ ଆଖିରେ ଆଣିଦେଇଛି ଲୁହର ବନ୍ୟା ।

ଏହା ବ୍ୟତୀତ ଧର୍ମ ସାହିତ୍ୟ କ୍ଷେତ୍ରରେ ଡକ୍ଟର ପାଣିଗ୍ରାହୀଙ୍କର ରହିଛି ଚାରିଗୋଟି ଅମୂଲ୍ୟ ଅବଦାନ । ପ୍ରଥମତଃ, ତାଙ୍କ 'ଆଞ୍ଜନେୟ' ପୁସ୍ତକରେ ମହାବୀର ଶ୍ରୀହନୁମାନଙ୍କର ଜୀବନ କାହାଣୀକୁ ସେ ଉପନ୍ୟାସ ଶୈଳୀରେ ଅତି ମର୍ମସ୍ପର୍ଶୀ ଭାବେ ବର୍ଣ୍ଣନା କରି ଜନମାନସକୁ ଉଦ୍‌ବୁଦ୍ଧ କରିପାରିଛନ୍ତି । ଦ୍ୱିତୀୟତଃ, ସେ ରଚନା କରିଛନ୍ତି ମହାଭାରତ କାହାଣୀ ଉପରେ ଆଧାରିତ 'ମହାଭାରତ ପରେ', ଯେଉଁ ପୁସ୍ତକରେ ପିତାମହ ଭୀଷ୍ମ ଶରଶଯ୍ୟାରେ ଥିବା ଅବସ୍ଥାରେ ଶ୍ରୀକୃଷ୍ଣଙ୍କ ଉପସ୍ଥିତିରେ ପାଣ୍ଡବମାନଙ୍କୁ ରାଜନୀତି, ଦେଶଶାସନ ଓ ସମାଜ ଶାସନ ସମ୍ପର୍କରେ ଦେଇଥିବା ଉପଦେଶାମୃତର ହୃଦୟଗ୍ରାହୀ ଆଲୋଚନା କରାଯାଇଛି । ଏହି ପୁସ୍ତକ ଆବାଳବୃଦ୍ଧବନିତା ସବୁ ସ୍ତରରେ ବେଶ୍ ଆଦୃତ

ହୋଇପାରିଛି । ତୃତୀୟତଃ, ଶ୍ରୀମୟୀ ବୈଷ୍ଣୋଦେବୀଙ୍କ ଉପରେ ସେ ରଚନା କରିଛନ୍ତି ଭ୍ରମଣକାହାଣୀ 'ଶ୍ରୀମୟୀ ବୈଷ୍ଣୋଦେବୀ' । ଏଥିପାଇଁ ୨୦୧୧ ରେ ଉତ୍କଳ ସାହିତ୍ୟ ସମାଜ ତାଙ୍କୁ 'ଭ୍ରମଣ କାହାଣୀ ସମ୍ମାନ' ପ୍ରଦାନ କରିଥିଲା । ପରିଶେଷରେ, ତାଙ୍କର 'ସନ୍ଥ ବିଭୂତି' ପୁସ୍ତକରେ ସେ ଶିରିଡ଼ି ସାଇବାବାଙ୍କ ଜୀବନ ଚରିତ ଓ ଅଲୌକିକ ଲୀଳା ବର୍ଣ୍ଣନା କରି ପାଠକ ମହଲରେ ବହୁ ପ୍ରଶଂସାଭାଜନ ହୋଇପାରିଛନ୍ତି ।

ଜଣେ ବିଶିଷ୍ଟ ଶିକ୍ଷାବିତ୍ ରୂପେ ଡକ୍ଟର ପାଣିଗ୍ରାହୀଙ୍କୁ ମିଳିଛି ରତ୍ନାକର ପତି ଶିକ୍ଷାବିତ୍ ସମ୍ମାନ ଏବଂ ତାଙ୍କ ଜୀବନବ୍ୟାପୀ ସାରସ୍ୱତ ସାଧନା ଓ ସିଦ୍ଧିର ସ୍ୱୀକୃତି ସ୍ୱରୂପ ତାଙ୍କୁ ମିଳିଛି 'କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର', 'ଓଡ଼ିଶା ସାହିତ୍ୟ ଏକାଡ଼େମୀ ସମ୍ମାନ', 'ଉତ୍କଳ ସାହିତ୍ୟ ସମାଜ ସମ୍ମାନ', 'ଧରିତ୍ରୀ ସାରସ୍ୱତ ସମ୍ମାନ', 'ଶ୍ରୀଧର ସ୍ୱାମୀ ସମ୍ମାନ', 'ସନ୍ଧ୍ୟାତାରା ସାହିତ୍ୟ ସଂସଦ ସମ୍ମାନ', 'ଶ୍ରୀଜଗନ୍ନାଥ ସଂସଦ ସ୍ମୃତି ସମ୍ମାନ' ଓ 'ରାଜଧାନୀ ପୁସ୍ତକମେଳା ପୁରସ୍କାର' ଆଦି ଅନେକ ସମ୍ମାନ ।

ଡକ୍ଟର ପାଣିଗ୍ରାହୀଙ୍କ ସ୍ପଷ୍ଟବାଦିତା, ଆଦର୍ଶବାଦ ଓ ନୀତିବାଦୀ ଜୀବନାଭିମୁଖ୍ୟ ତାଙ୍କୁ ଅନେକ ସମୟରେ ଯେ ଅସୁବିଧାରେ ନ ପକାଇଛି ତାହା ନୁହେଁ । କିନ୍ତୁ ତାଙ୍କ ଶାଣିତ ଲେଖନୀରେ ଏହି ଗୁଣାବଳୀ ବ୍ୟତୀତ ଆଉ କେବେ କିଛି ବିପରୀତମୁଖୀ ଆଭିମୁଖ୍ୟ ପ୍ରତିଫଳିତ ହୋଇ ନାହିଁ । ସରକାରୀ ଚାକିରିରେ ଥାଇ ମଧ୍ୟ ଆବଶ୍ୟକ ସ୍ଥଳେ ସରକାରୀ ନୀତି ଓ ଯୋଜନାଗୁଡ଼ିକର ନିରପେକ୍ଷ ସମୀକ୍ଷା ତଥା ସମାଲୋଚନା କରିବାକୁ ସେ କେବେ ପଛାଇ ନାହାନ୍ତି । ନିଜ କଲମକୁ ସଂଯତ ରଖିବାପାଇଁ ତାଙ୍କୁ ଅନେକ ସମୟରେ କିଛି ବନ୍ଧୁ ଓ ସହକର୍ମୀ ପରାମର୍ଶ ଦେଇଛନ୍ତି । ସବୁ ଶୁଣି ସେ ନୀରବ ରହିଛନ୍ତି ସିନା ତାହା ତାଙ୍କ କଲମକୁ କେବେ ଦୁର୍ବଳ କରିଦେଇ ପାରି ନାହିଁ । ଭଗବାନ୍‌ଙ୍କ ଉପରେ ଭରସା ରଖି ଗଭୀର ଆତ୍ମବିଶ୍ୱାସର ସହ ସେ ସର୍ବଦା ନିରପେକ୍ଷଭାବେ ଲେଖନୀ ଚାଳନା କରିଛନ୍ତି । କ୍ଷମତା ଅଳିନ୍ଦର ଭୟ ତାଙ୍କୁ କେବେ ଭୀତତ୍ରସ୍ତ କରିପାରି ନାହିଁ ବା ଅନ୍ୟ କୌଣସି ପ୍ରତିକୂଳ ଶକ୍ତିର ଅଙ୍କୁଶ ଆଶଙ୍କାରେ ସେ କେବେ ନଇଁପଡ଼ି ନାହାନ୍ତି । ସେ ସର୍ବଦା ନିର୍ଭୀକ । ଚାକିରି କଲେ ମଣିଷକୁ ଯେଉଁ ନରମ ମନୋଭାବ ଗ୍ରହଣ କରିବାକୁ ହୁଏ, ସେ ତାର ସୀମା ସ୍ପର୍ଶ କରିନାହାନ୍ତି । ନିଜର ସ୍ୱାର୍ଥ ସିଦ୍ଧି ପାଇଁ ସେ କଦାପି ଚାଟୁ ବଚନ କହିବା ଶିଖି ନ ଥିଲେ । ଯେତେ ଅପ୍ରିୟ ହେଉ ପଛେ ସତ୍ୟକୁ ସେ ଦ୍ୱିଧାହୀନ ଭାବେ ନିର୍ଭୟରେ ପ୍ରକାଶ କରନ୍ତି । ନିଜ ସ୍ୱାର୍ଥର ପରିପନ୍ଥୀ ବୋଲି ଜାଣୁଥିଲେ ସୁଦ୍ଧା ସତ୍ୟ ପ୍ରକାଶ ନ କରି ସେ ରହିପାରନ୍ତି ନାହିଁ । କାହାକୁ ଅନ୍ୟାୟରେ ଡରିଯିବାର ପରମ୍ପରା ତାଙ୍କର ନ ଥିଲା । ନିଜକୁ କୌଣସି ସ୍ଥିତିରେ ନ୍ୟୂନ ମନେକରି ବା କାହା ଆଗରେ ଅନ୍ୟାୟରେ ମୁଣ୍ଡ ନୁଆଁଇବା ତାଙ୍କ ପକ୍ଷରେ

ସମ୍ଭବପର ନ ଥିଲା । ଯେଉଁଠାରେ ଅନ୍ୟାୟ ବା ଅସଙ୍ଗତି ଦେଖନ୍ତି, ଅପ୍ରିୟ ହେଉପଛେ ପଦେ ଅଧେ କହିପକାନ୍ତି । ଏଥିପାଇଁ ତାଙ୍କ ମନ୍ତବ୍ୟର ଶରବ୍ୟ ହୋଇଥିବା ପକ୍ଷ କ୍ଷୁବ୍ଧ ହୋଇଥାନ୍ତି ଏବଂ ତାଙ୍କ ସମ୍ପର୍କରେ କଟୁ ମନ୍ତବ୍ୟ ପ୍ରକାଶ କରନ୍ତି । କିନ୍ତୁ ତାଙ୍କ ଅନ୍ତରଟା ସେପରି ନୁହେଁ । ସେ ଏକ ସ୍ୱଚ୍ଛ ନିର୍ମଳ ବ୍ୟକ୍ତିତ୍ୱର ଅଧିକାରୀ ।

ଗୋଟିଏ ଦୃଷ୍ଟିରୁ ବିଚାର କଲେ, ଡକ୍ଟର ପାଣିଗ୍ରାହୀ ଜଣେ ନିଃସଙ୍ଗ ବ୍ୟକ୍ତି । କାରଣ ତାଙ୍କ ପକ୍ଷରେ ଗୋଠରେ ମିଶିବା ଯେତିକି ଉତ୍ପୀଡ଼କ, ଗୋଠ ଗଢ଼ିବା ସେତିକି ଅରୁଚିକର । ସହଜେ ତ ତାଙ୍କ ସ୍ପଷ୍ଟବାଦୀତା ଓ ଅନମନୀୟ ପ୍ରକୃତିକୁ ଅନେକ ଅହଙ୍କାର ରୂପେ ବିଚାର କରିଥାନ୍ତି । ତାଙ୍କର ଜୀବନ ତେଣୁ କଟିଛି ପୁସ୍ତକ ମେଳରେ । ବ୍ୟକ୍ତିଗତଭାବେ ଏହା ଲାଭପ୍ରଦ ହୋଇଛି ସିନା, ଆଦୌ କ୍ଷତିକାରକ ହୋଇ ନାହିଁ । ପ୍ରକୃତରେ ତାଙ୍କ ଜୀବନ ଆକାଶ ପରି ସ୍ପଷ୍ଟ ଓ ଜଳ ପରି ସ୍ୱଚ୍ଛ । ତାଙ୍କୁ ଅନେକ ଛାଡ଼ିଛନ୍ତି ତାଙ୍କ ବେସାଲିସ୍, ଅନମନୀୟ ମନୋଭାବ ଯୋଗୁଁ । ସାମ୍ପ୍ରତିକ ସମାଜରେ ସଫଳତାର ଅସଲ ଚାବିକାଠି ହେଲା 'କମ୍ପ୍ରୋମାଇଜ୍' ବା 'ସାଲିସ୍' । ନିଜ ବିଚାର ଓ ବିବେକ ସହିତ ଯିଏ ଯେତେ ବେଶୀ ସାଲିସ୍ କରିପାରିଛି ସିଏ ସେତେ ବେଶୀ ସଫଳ ହୋଇପାରିଛି । ମାତ୍ର ଡକ୍ଟର ପାଣିଗ୍ରାହୀ ଏପରି ସାଲିସ୍‌ର ଚିନ୍ତା ସୁଦ୍ଧା କେବେ କରିପାରିନାହାନ୍ତି । ନିଜ ସିଦ୍ଧାନ୍ତକୁ ବଳିଷ୍ଠ ଯୁକ୍ତି ମାଧ୍ୟମରେ ଉପସ୍ଥାପନ କଲାବେଳେ ତାଙ୍କର କଣ୍ଠରୋଧ ହୁଏ ନାହିଁ । ଏହି ଅନମନୀୟ ବ୍ୟକ୍ତିତ୍ୱ ଭାଙ୍ଗିଯିବେ ପଛେ ନଇଁବେ ନାହିଁ । ସବୁ ପରାଜୟକୁ ବରଂ ବରଣ କରିନେବେ, କିନ୍ତୁ ଅସତ୍ୟ, ଅନ୍ୟାୟ ସହିତ ସନ୍ଧି କରିବାର ନାହିଁ । ଏଥିପାଇଁ ଅନେକ ସମୟରେ ସମ୍ମୁଖୀନ ହୋଇଥିବା ପ୍ରତିକୂଳ ପରିସ୍ଥିତି ଓ ବାଦ-ବିସମ୍ବାଦକୁ ସେ ଧୈର୍ଯ୍ୟର ସହ ସାମନା କରି ତାଙ୍କ ବ୍ୟକ୍ତିତ୍ୱର ନିଛକ ପ୍ରତିଫଳନ ଘଟାଇଛନ୍ତି ।

ଜଣେ ସଚ୍ଚା ଓଡ଼ିଆ ହିସାବରେ ଡକ୍ଟର ପାଣିଗ୍ରାହୀଙ୍କ ସ୍ୱାଭିମାନ ଅନନ୍ୟ ସାଧାରଣ । ଦରିଦ୍ର ଓଡ଼ିଶାବାସୀ ଓ ଓଡ଼ିଆ ଭାଷାର ପ୍ରଗତି ପାଇଁ କଳ୍ପିତ ଭବିଷ୍ୟତର ସେତୁବନ୍ଧରେ ଗୁଣ୍ଡୁଚି ମୂଷାଟିଏ ଭଳି ତାଙ୍କର ସାମାନ୍ୟତମ ଅବଦାନ ଦେଇଯିବାପାଇଁ ସେ ସର୍ବଦା ବ୍ୟାକୁଳ । ଇଂରାଜୀରେ ତ ଅନେକ ପୁସ୍ତକର ରଚୟିତା ଓ ବହୁ ନିବନ୍ଧର ଲେଖକ କିନ୍ତୁ ଓଡ଼ିଆରେ ବି ଶ୍ରେଷ୍ଠ ପ୍ରାବନ୍ଧିକ, ସ୍ତମ୍ଭକାର, ଲେଖକ ଓ ବହୁ ଉପାଦେୟ ଗ୍ରନ୍ଥର ରଚୟିତା ହୋଇ ମଧ୍ୟ ତାଙ୍କ ଲେଖନୀ ଏବେ ବି ଅବିଶ୍ରାନ୍ତ ଗତିରେ ଚାଲି ଚାଲି ଓଡ଼ିଶାର ବୌଦ୍ଧିକ ଜଗତକୁ ବହୁଭାବେ ଋଦ୍ଧିମନ୍ତ କରିବାରେ ଲାଗିଛି । ଇଂରାଜୀରେ ଲେଖାଲେଖି କରି ସର୍ବଭାରତୀୟ ସ୍ତରରେ ଅଧିକ ସୁନାମ ଅର୍ଜନ କରିବାର ସୁଯୋଗକୁ ହାତଛଡ଼ା କରି ଓଡ଼ିଆରେ କାହିଁକି ଅଧିକ ଲେଖାଲେଖି କରୁଛନ୍ତି ବୋଲି ପ୍ରଶ୍ନ ହେବାରୁ ସେ ଉତ୍ତର

ଦେଇଥିଲେ– 'ମୁଁ ଇଂରାଜୀରେ ଲେଖାଲେଖି ନ କଲେ ଦେଶ ବା ଇଂରାଜୀ ଭାଷା ଦରିଦ୍ର ହୋଇଯିବ ନାହିଁ । ଦେଶରେ ଇଂରାଜୀ ଲେଖା, ଆଲୋଚନା ବା କୌଣସି ଗ୍ରନ୍ଥର ଅଭାବ ନାହିଁ । ଇଂରାଜୀର ବିପୁଳ ସାହିତ୍ୟ ସମ୍ଭାରର ଦ୍ୱାର ଦେଶବାସୀଙ୍କ ପାଇଁ ଉନ୍ମୁକ୍ତ ରହିଛି । କିନ୍ତୁ ମୁଁ ଯଦି ମୋ ମାତୃଭାଷାରେ ନ ଲେଖେ ମୋ ଭାଷା ଦରିଦ୍ର ହୋଇଯିବ । ସ୍ୱର୍ଗଠାରୁ ବଡ଼ ମୋ ଜନନୀ ଜନ୍ମଭୂମିର ଋଣ ମୁଁ ଜୀବନରେ ଶୁଝି ପାରିବି ନାହିଁ । ମୁଁ ମୋର ମାତୃଋଣ ଶୁଝିବାରେ ଯଥାସମ୍ଭବ ଚେଷ୍ଟା କରୁଛି, ମୋ ଅବଦାନର ସାକ୍ଷର ମୋ ମାତୃଭାଷା ବହନ କରୁ । ମୁଁ ଜୀବନରେ ପଣ କରିଛି ମୋ ମାତୃଭାଷାକୁ ମୁଁ ମୋ ଅବଦାନରେ ଆହୁରି ସମୃଦ୍ଧ କରିଯିବି ।' ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଏପରି ଗଭୀର ଅନୁରକ୍ତି ଓ ଅଙ୍ଗୀକାରବଦ୍ଧତା ଏକ ବିରଳ ଦୃଷ୍ଟାନ୍ତ ବୋଲି କୁହାଯାଇପାରେ ।

ଡକ୍ଟର ପାଣିଗ୍ରାହୀଙ୍କର କର୍ମମୟ ଜୀବନ ଯେପରି ବୈଚିତ୍ର୍ୟମୟ ସେହିପରି ବର୍ଣ୍ଣାଢ଼୍ୟ । ଦୃଢ଼ ମନୋବଳ, ଗଭୀର ଆତ୍ମବିଶ୍ୱାସ, ଅଫୁରନ୍ତ କର୍ମନିଷ୍ଠା, ଅନୁଶୀଳନ ପ୍ରୟାସ, ମହତର ଆଦର୍ଶର ଅନୁପ୍ରେରଣା ତଥା ନିଜସ୍ୱ ଜୀବନଦୃଷ୍ଟି ତାଙ୍କ ଜୀବନ ସାଧନାର ଅନ୍ତରାଳରେ ବିଦ୍ୟମାନ । ଓଡ଼ିଆ ଭାଷାରେ ପ୍ରାୟୋଗିକ ଓ ସମାଜତାତ୍ତ୍ୱିକ ସମାଲୋଚନା, ଅର୍ଥନୀତି ଓ ରାଜନୈତିକ ସମସ୍ୟାକୁ ନୂତନ ଦୃଷ୍ଟିଭଙ୍ଗୀରେ ବିଶ୍ଳେଷଣ ପୂର୍ବକ ସାବଲୀଳ ରଚନାଶୈଳୀର ପ୍ରବର୍ତ୍ତକ ଭାବେ ତାଙ୍କ ଲେଖନୀ ପାଠକଙ୍କ ନିକଟରେ ସୃଷ୍ଟି କରିଛି ଏକ ସ୍ୱତନ୍ତ୍ର ପରିଚୟ । ପୁଣି ଜଣେ ବନ୍ଧୁବତ୍ସଳ ବାଗ୍ମୀ, ନିରଳସ, ନିରାଭିମାନୀ ଅଥଚ ସ୍ୱାଭିମାନୀ ଚେତନାର ଅଧିକାରୀ ତଥା ତୀକ୍ଷ୍ଣଦୃଷ୍ଟିସମ୍ପନ୍ନ ପ୍ରଜ୍ଞାଦୀପ୍ତ ମନନଶୀଳତାର ଚିନ୍ତାନାୟକରୂପେ ଓଡ଼ିଶାର ବୌଦ୍ଧିକ ଜଗତରେ ସେ ଏକ ବହୁଚର୍ଚ୍ଚିତ ବ୍ୟକ୍ତିତ୍ୱ । ରାଜ୍ୟ ଓ କେନ୍ଦ୍ର ସାହିତ୍ୟ ଅକାଦେମୀ ତାଙ୍କ ସାରସ୍ୱତ କୃତିତ୍ୱର ମୂଲ୍ୟାଙ୍କନପୂର୍ବକ ତାଙ୍କୁ ପୁରସ୍କୃତ କରି ନିଜର ମର୍ଯ୍ୟାଦା ବୃଦ୍ଧି କରିଥିବାବେଳେ ଓଡ଼ିଶା ମାଟି ତାଙ୍କ ଭଳି ସୁଯୋଗ୍ୟ ସୁପୁତ୍ର ପାଇ ନିଜକୁ ଗୌରବାନ୍ୱିତ କରିପାରିଛି ।



# ଜୀବନ ନାଟକର ନାୟକ
# ନାଟ୍ୟକାର କାର୍ତ୍ତିକ ଚନ୍ଦ୍ର ରଥ

ଡକ୍ଟର ଗୋବିନ୍ଦ ଚନ୍ଦ୍ର ଚାନ୍ଦ

॥ ଦୃଶ୍ୟ : ଏକ ॥

ଅଳ୍ପ କେତୋଟି ମୁହୂର୍ତ୍ତ ପୂର୍ବରୁ ନାଟକର ସମସ୍ତ ଚରିତ୍ର ପ୍ରାଣ ହରାଇଛନ୍ତି, ତାହା ପୁଣି ବିଭିନ୍ନ କାରଣରୁ ... ଘଟଣା, ବିଘଟଣ ଓ ଦୁର୍ଘଟଣା ହେତୁ । ଏ ଏକ ନୂତନ ସ୍ୱାଦର ନାଟକ । ମୃତ ଚରିତ୍ରମାନେ କଥା କହୁଛନ୍ତି । କହୁଛନ୍ତି ଯାହା ସବୁ ଘଟିଗଲା, ସେହି ସବୁ କଥା । ଅତୀନ୍ଦ୍ରିୟ ଚେତନାକୁ ଅଧାର କରି ଏ ନାଟକର ପରିକଳ୍ପନା । ଏହାର ନାଁ 'ସ୍ୱର୍ଗଦ୍ୱାର' । ନାଟ୍ୟକାର ରେଭେନ୍ସା କଲେଜର ଅର୍ଥନୀତି ବିଭାଗରେ ଏମ୍.ଏ. ଶ୍ରେଣୀର ଶେଷ ବର୍ଷର ଛାତ୍ର । ନାଟ୍ୟକାର ମଧ୍ୟ ଥିଲେ ଏହି ନାଟକର ନିର୍ଦ୍ଦେଶକ । ମନରେ ନାହିଁ ନ ଥିବା ଆନନ୍ଦ । ତରୁଣ ଜୀବନରେ ଆସୁଛି ଅପୂର୍ବ ସୁଯୋଗ ... ଅଫୁରନ୍ତ ପୁଲକ । କଟକର ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ରଙ୍ଗମଞ୍ଚରେ ଅଭିନୀତ ହେବ ଏହି ଅଭିନବ ଚିନ୍ତା ଓ ଚେତନାର ନାଟକଟି । କଟକର ବିଦଗ୍ଧ ନାଟ୍ୟପ୍ରେମୀ ଜନତା ଦେଖିବେ ନୂଆ ପରିକଳ୍ପନାର ଏ ନାଟକ, ଆଉ ନାନ୍ଦନିକ ମୂଲ୍ୟ ଆଧାରରେ ତଉଲିବେ ତା'କୁ । ପିଲାଦିନୁଁ ଏହି ମଞ୍ଚରେ ସେ ଦେଖିଛନ୍ତି କେତେ କେତେ ପ୍ରଖ୍ୟାତ ନାଟ୍ୟକାର, ନିର୍ଦ୍ଦେଶକ ଓ ଅଭିନେତା-ଅଭିନେତ୍ରୀଙ୍କ ଜନାଦୃତ ସଫଳ ନାଟକ । ତରୁଣ ନାଟ୍ୟ-ସ୍ରଷ୍ଟାଙ୍କୁ ସେମାନେ କିପରି ଗ୍ରହଣ କରିବେ, ତାହାର ପ୍ରମାଣ ସେ ରାତି ହିଁ ଦେବ ।

ଆସିଲା ନାଟକ ଅଭିନୟର ଦିନ - ୧୯୭୦ ମସିହା ଅଗଷ୍ଟ ମାସ ୧୭ ତାରିଖ । ସନ୍ଧ୍ୟାରେ ମଞ୍ଚସ୍ଥ ହେବ ଏହି ନୂଆ ସ୍ୱାଦ ଓ ସ୍ୱରର ନାଟକ । ପୂର୍ବାହ୍ଣରେ ନାଟ୍ୟକାର-ନିର୍ଦ୍ଦେଶକ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ରଙ୍ଗମଞ୍ଚରେ ନାଟ୍ୟାଭ୍ୟାସ ସହ ଆଲୋକ, ଶବ୍ଦ, ସଙ୍ଗୀତ,

ପ୍ରତୀତାତ୍ମକ ଦୃଶ୍ୟସଜ୍ଜା ଆଦି ମଞ୍ଚଶିଳ୍ପ କାର୍ଯ୍ୟରେ ବ୍ୟସ୍ତ ଥିବା ବେଳେ ଆକସ୍ମିକ୍ ଭାବେ ଘରୁ ଆସି ପହଞ୍ଚିଲେ କ୍ରନ୍ଦନରତା ମଝିଆଁ ଭଉଣୀ ସରୋଜିନୀ । ଘରେ ବାପାଙ୍କ ଉଦ୍‌ବେଗଜନକ ଅସୁସ୍ଥତାର ଖବର ଦେଲେ । ତରବରରେ ମଞ୍ଚରେ ତାଙ୍କ ସହ ସହଯୋଗ କରୁଥିବା ସାନ ଭଉଣୀ ଶୈଳବାଳା ଓ ସରୋଜିନୀଙ୍କୁ ସାଥୀରେ ଧରି ସେ ଫେରିଲେ ଘରକୁ । ସେତେବେଳକୁ ଆକସ୍ମିକ ହୃଦ୍‌ଘାତରେ ଆକ୍ରାନ୍ତ ହୋଇ ପରପାରିକୁ ଚାଲିଯାଇ ସାରିଥିଲେ ତାଙ୍କ ବାପା - ଓଡ଼ିଶାର ପ୍ରସିଦ୍ଧ ମାଇନିଂ ଇଞ୍ଜିନୟର୍ ତଥା ଭୂତତ୍ତ୍ୱବିଜ୍ଞାନୀ ଗଣେଶ ପ୍ରସାଦ ରଥ । ସେତେବେଳକୁ ବାପାଙ୍କୁ ହୋଇଥିଲା ମାତ୍ର ୫୬ ବର୍ଷ । ବାଟରୁ କିଣି ଆଣିଥିବା ଜୀବନ- ରକ୍ଷକ କୋରାମିନ୍ ଔଷଧ ଶିଶିଟି କିଛି କାମରେ ଲାଗି ନ ଥିଲା । ହଠାତ୍ ବାପା ଛେଉଣ୍ଡ ହୋଇଗଲେ ସେ !

ଅପରାହ୍ଣରେ ପୁଣି ଆସି ପହଞ୍ଚିଥିଲେ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ । ନାଟକ ସହ ସଂପୃକ୍ତ ଅଭିନେତା, ଅଭିନେତ୍ରୀ ଓ ଅନ୍ୟ ସହଯୋଗୀ ବନ୍ଧୁମାନଙ୍କୁ ବାପାଙ୍କ ଆକସ୍ମିକ୍ ପରଲୋକ ଗମନ ଖବର ଜଣାଇଲେ । ଏକାନ୍ତ ଅନୁରୋଧ କରିଥିଲେ ନାଟକଟିକୁ ସନ୍ଧ୍ୟାରେ ଯଥାବିଧି ମଞ୍ଚସ୍ଥ କରାଇବାକୁ । ନିଜେ ମୁଖ୍ୟ ସଂଗଠକ ହୋଇଥିବା ହେତୁ ହଲ୍ ଭଡ଼ାଠାରୁ ଆରମ୍ଭ କରି ଆଲୋକ, ଶବ୍ଦ, ରୂପସଜ୍ଜା ଆଦି ବାବଦରେ ଯାହାର ଯାହା ପାଉଣା ପାଇବାର ଥିଲା ତାହା ବାଣ୍ଟିଦେଇ ଫେରିଆସିଲେ ଘରକୁ ।

ସନ୍ଧ୍ୟାରେ ବାପାଙ୍କ କୋକେଇ ସହ ନାଟ୍ୟକାର ସତୀଚଉରା ଶ୍ମଶାନ ଅଭିମୁଖେ ଚାଲିଲେ । ସେଠାରେ ଚାଲିଲା ଦାହ ସଂସ୍କାର । ଏପଟେ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ମଞ୍ଚସ୍ଥ ହେଉଥିଲା ତାଙ୍କର ସପ୍ନର ନାଟକ 'ସ୍ୱର୍ଗଦ୍ୱାର' ! ଏହାର ଚରିତ୍ର ସବୁ ମୃତ !! ଆଉ ଏହି ନାଟକ ଅଭିନୀତ ହେଉଥିବା ବେଳେ ନାଟ୍ୟକାର ନିଜର ପରଲୋକଗତ ପିତାଙ୍କୁ ନେଇ ସତୀଚଉରା ଶ୍ମଶାନକୁ ଶବ ସଂସ୍କାର ପାଇଁ ଯିବା ଭାଗ୍ୟର କେତେ ବଡ଼ ବିଡ଼ମ୍ୱନା ସତେ !!! ଏ ଦୁନିଆଁରେ କେତେଜଣ ନାଟ୍ୟକାର ଏପରି ଦୁର୍ଭାଗ୍ୟକୁ ଭେଟିଥିବେ ନିଜର ପ୍ରାରମ୍ଭିକ ପର୍ଯ୍ୟାୟ ସାରସ୍ୱତ ଯାତ୍ରାପଥରେ ... ! କଟକ ସହରର ଯେଉଁ ବିଦଗ୍‌ଧ ନାଟ୍ୟପ୍ରେମୀ ଓ ନାଟ୍ୟକାରଙ୍କ ଶୁଭାକାଙ୍‌କ୍ଷୀମାନେ ଅନ୍ନପୂର୍ଣ୍ଣା ପ୍ରେକ୍ଷାଳୟରେ ନାଟ୍ୟକାର ତଥା ନିର୍ଦ୍ଦେଶକଙ୍କ ପିତୃବିୟୋଗ ପରି ମର୍ମ୍ମଦାହ ସମ୍ୱାଦ ଶୁଣି ଦୁଃଖରେ ମ୍ରିୟମାଣ ହୋଇପଡ଼ିଥିଲେ; ସେମାନେ ମନ୍ତ୍ରମୁଗ୍ଧ ହୋଇଥିଲେ ଏଇ ନୂତନ ଧରଣର ନାଟକଟିକୁ ଦେଖି । ସମସ୍ତଙ୍କ ମୁଖରେ ଥିଲା ନାହିଁ ନ ଥିବା ପ୍ରଶଂସା ।

ଦର୍ଶକଙ୍କ ମଧ୍ୟରୁ ଅନେକେ ନାଟକ ଦେଖି ସାରି ନାଟ୍ୟକାରଙ୍କୁ ସମବେଦନା ଜଣାଇବା ପାଇଁ ପହଞ୍ଚିଥିଲେ ସତୀଚଉରା ଶ୍ମଶାନରେ । ନାଟ୍ୟକାର ଥିଲେ ପିତାଙ୍କ ଏକମାତ୍ର

ପୁତ୍ର । ମୁଖାଗ୍ନି ଦେଇଥିଲେ ସେ । ଶବଦାହ ଚାଲିଥିବା ବେଳେ ପ୍ରେକ୍ଷାଳୟରୁ ସିଧା ଶ୍ମଶାନକୁ ଆସିଥିବା କେତେକ ଦର୍ଶକଙ୍କୁ ଦୁଃଖରେ ସନ୍ତପିତ ହୋଇ ସୁଦ୍ଧା ସେ ନିଜେ ପଚାରି ବୁଝୁଥିଲେ– 'ନାଟକ କେମିତି ଲାଗିଲା ?' ଗୋଟିଏ ଦିଗରେ ଅକାଳରେ ପୁଣି ଏ ଭଳି ଅବସରରେ ପିତାଙ୍କୁ ହରାଇବାର ଦାରୁଣ ଦୁଃଖ ଏବଂ ଅନ୍ୟ ଦିଗରେ ନିଜ ମାନସ ସନ୍ତାନର ସଫଳତା ମନରେ ଭିନ୍ନ ଅନୁଭୂତି ଆଣି ଦେଉଥିଲା । ଆଖିରୁ ତାଙ୍କର ଝରି ପଡୁଥିଲା ଅସରା ଅସରା ଲୁହ । ସମସ୍ତେ ତାଙ୍କୁ ଆଶୀର୍ବାଦ କରୁଥିଲେ । କେହି କେହି କହୁଥିଲେ, " ଭଗବାନ୍ ତୁମକୁ ଏ ଦାରୁଣ ଦୁଃଖ ସହିବାକୁ ଶକ୍ତି ଦିଅନ୍ତୁ ... ତୁମ ମନକୁ ଦୃଢ଼ କରନ୍ତୁ, ଭାଙ୍ଗିପଡ଼ ନାହିଁ । ହେଲେ ଗୋଟିଏ କଥା ମନେ ରଖ, କେବେ ବି ନାଟକ ଲେଖିବା ଛାଡ଼ିବ ନାହିଁ ।"

ଜୀବନ ଏକ ନାଟକ । ସେଇ ନାଟକର ଜଣେ ଜଣେ କଳାକାର ଆମେ ସଭିଏଁ । ଜୀବନ ନାଟକ ରୋମାଞ୍ଚରେ ଭରା । କେବେ ହସଖୁସିର ଫୁଆରା ତ କେବେ ପୁଣି ଲୁହଲହୁ ଝରା । ହେଲେ ନାଟକ ସହ ଜୀବନ-ଯାତ୍ରାର ଏତେଟା ସାମଞ୍ଜସ୍ୟ କ'ଣ ଆଉ କେଉଁ ନାଟ୍ୟକାରଙ୍କ ଜୀବନରେ ଆସିଛି ? ନାଟକରୁ ସୁଖ-ସନ୍ତୋଷ ପାଇବା ବେଳେ ତାଙ୍କ ମୁଣ୍ଡ ଉପରୁ ଅପସରି ଯାଇଛି ଅଭୟମୁଦ୍ରା । ମାତ୍ର ନାଟକ 'ସର୍ଗଦ୍ୱାର'... ! ଏହି ନାଟକଟି ପରବର୍ତ୍ତୀ ସମୟରେ ଆକାଶବାଣୀ କଟକ କେନ୍ଦ୍ରରୁ ପ୍ରସାରିତ ହୋଇ ନାଟ୍ୟକାରଙ୍କୁ ଅଗ୍ରଣୀ ନାଟ୍ୟକାରର ସୀକୃତି ଦେଇଛି । ସେହି ନାଟ୍ୟକାର ଓ ନାଟ୍ୟ-ନିର୍ଦ୍ଦେଶକ ହେଉଛନ୍ତି ଓଡ଼ିଆ ନାଟ୍ୟ ସାହିତ୍ୟର ପ୍ରତିପାଦିତ ପ୍ରଚଣ୍ଡ ପ୍ରତିଭାସଂପନ୍ନ ପୁରୁଷ କାର୍ତ୍ତିକ ଚନ୍ଦ୍ର ରଥ । ସାରା ଜୀବନ ନାଟକ ଓ ରଂଗମଞ୍ଚକୁ ନେଇ ଥକାହୀନ ହୋଇ ରାସ୍ତା ଚାଲିଥିବା ମଣିଷ ଏହି ନାଟକ ପାଇଁ କେତେ କେତେ ଦୁଃଖଦ ମୁହୂର୍ତ୍ତକୁ ସାମ୍ନା କରି ନାହାନ୍ତି ସତେ ! ସାରସତ ଜୀବନର ପ୍ରାରମ୍ଭ ପର୍ବରୁ ହିଁ ଏପରି ଦୁର୍ଯୋଗ ଓ ଦୁର୍ଭାଗ୍ୟକୁ ଭେଟିବାକୁ ହୋଇଛି ତାଙ୍କୁ ।

॥ ଦୃଶ୍ୟ : ଦୁଇ ॥

ବାପାଙ୍କ ମୃତ୍ୟୁର ଠିକ୍ ମାସେ ପରେ ତାଙ୍କ ରଚିତ ଓ ନିର୍ଦ୍ଦେଶିତ ଆଉ ଏକ ନାଟକ 'ଜଉଘର' ପୂର୍ବ ଅଭିନୀତ 'ସର୍ଗଦ୍ୱାର'ର କଳାକାରମାନଙ୍କୁ ନେଇ ମଞ୍ଚସ୍ଥ ହୋଇଥିଲା ଭୁବନେଶ୍ୱରର ରବୀନ୍ଦ୍ର ମଣ୍ଡପରେ । ନାଟ୍ୟକାର ଜୀବନ ଆଗକୁ ବଢୁଥିଲା ... । ବାପାଙ୍କ ମୃତ୍ୟୁର ଠିକ୍ ଛ'ମାସ ପରେ ବାପାଙ୍କ ଅସ୍ଥି ନେଇ ଆହ୍ଲାବାଦ୍ ଯାଇଥିଲେ ନାଟ୍ୟକାର ପୁତ୍ର । ଗଙ୍ଗାନଦୀର ତ୍ରିବେଣୀ ସଙ୍ଗମରେ ଅସ୍ଥି ବିସର୍ଜ୍ଜନ କରି ପୁତ୍ରର ପରମ କର୍ତ୍ତବ୍ୟ ସଂପାଦନ କରିଥିବା ନାଟ୍ୟକାର କାର୍ତ୍ତିକ ଚନ୍ଦ୍ର ସେହି ଦିନ ଆହ୍ଲାବାଦ୍‌ରେ ହିଁ ଓଡ଼ିଆ ନାଟକ ପାଇଁ ସୁଖ୍ୟାତି ଆଣି ଦେଇଥିଲେ । ସେଠାରେ ଅନୁଷ୍ଠିତ ନିଖିଳ ଭାରତ ବହୁଭାଷୀ ନାଟକ ପ୍ରତିଯୋଗିତାରେ ତାଙ୍କ ରଚିତ ଓ ନିର୍ଦ୍ଦେଶିତ ନାଟକ 'ଜୀବନ ଯଜ୍ଞ' ପରିବେଷଣ କରି

ଶ୍ରେଷ୍ଠ ନାଟ୍ୟକାର ରୂପେ ପୁରସ୍କୃତ ହେଇଥିଲେ ସେ । ପିତାଙ୍କ ଅସ୍ଥି ବିସର୍ଜନ ସହ ଜାତୀୟସ୍ତରରେ ଶ୍ରେଷ୍ଠ ନାଟ୍ୟକାର ରୂପେ ପୁରସ୍କାର ଗ୍ରହଣ, ଜୀବନ ସହ ନାଟକକୁ ଯେପରି ନିବିଡ଼ ଭାବେ ଯୋଡ଼ି ଦେଇଥିଲା । ପରବର୍ତ୍ତୀ କାଳରେ ପ୍ରାୟ ୩୦ ବର୍ଷ ଧରି ସ୍ୱରଚିତ ଓ ନିର୍ଦ୍ଦେଶିତ ବିଭିନ୍ନ ନାଟକ ନେଇ ସେ କ୍ରମାଗତ ଭାବେ ଆହ୍ଲାବାଦ୍, ପାଟନା, ଦିଲ୍ଲୀ, ସିମ୍ଲା ଆଦି ଦେଶର ବିଭିନ୍ନ ସ୍ଥାନକୁ ଯାଇ ସର୍ବଭାରତୀୟ ନାଟକ ପ୍ରତିଯୋଗିତାମାନଙ୍କରେ ଅଂଶଗ୍ରହଣ କରି ଓଡ଼ିଆ ନାଟକ, ରଙ୍ଗମଞ୍ଚ ତଥା ନାଟ୍ୟକଳାର ପ୍ରଚାର, ପ୍ରସାର ତଥା ପ୍ରତିଷ୍ଠା ଦିଗରେ କ୍ରମାଗତଭାବେ ନିଜର ଉଦ୍ୟମ ଜାରି ରଖିଲେ । ଭାରତର ବିଭିନ୍ନ ରାଜ୍ୟରେ ଜଣେ ଶ୍ରେଷ୍ଠ ନାଟ୍ୟକାର ଓ ନିର୍ଦ୍ଦେଶକ ଭାବେ ପୁରସ୍କୃତ, ସମ୍ମାନିତ ଓ ସମ୍ବର୍ଦ୍ଧିତ ମଧ୍ୟ ହେଲେ ।

ସୌଭାଗ୍ୟ ଅର୍ଜନର ଦୁର୍ଭାଗ୍ୟ ଯେ ସହଚର ତାହାର ପୁନରାବୃତ୍ତି ହୋଇଥିଲା ୨୦୦୩ ମସିହାରେ, ପୁଣି ଥରେ ତାଙ୍କ ଜୀବନରେ । ନୂଆଦିଲ୍ଲୀଠାରେ 'ନିପା' ପକ୍ଷରୁ ଅନୁଷ୍ଠିତ ଅନ୍ତର୍ଜାତୀୟ ଶିଶୁ ନାଟକ ମହୋତ୍ସବରେ କଟକରୁ ନିଜ ଦଳ ସହ ନାଟ୍ୟକାର କାର୍ତ୍ତିକ ଚନ୍ଦ୍ର ରଥ ସ୍ୱରଚିତ ଓ ନିର୍ଦ୍ଦେଶିତ ଐତିହାସିକ ନାଟକ 'କଳିଙ୍ଗ ଯୁଦ୍ଧ'କୁ ନେଇ ଯୋଗ ଦେଇଥିଲେ । ୨୦୦୩ ନଭେମ୍ବର ୧୭ ତାରିଖ । ସନ୍ଧ୍ୟାରେ ନୂଆଦିଲ୍ଲୀର ଏଲ୍.ଟି.ଟି. ଅଡିଟୋରିୟମ୍‌ରେ ଦେଶବିଦେଶର ଶିଶୁଶିଳ୍ପୀମାନଙ୍କ ଗହଣରେ ମଞ୍ଚସ୍ଥ ହେବାର ଥିଲା ତାଙ୍କର ଏହି ଶିଶୁ ନାଟକଟି । ଠିକ୍ ସେହି ଦିନ ସକାଳୁ ଫୋନ୍ ଯୋଗେ କଟକ ଘରୁ ପହଞ୍ଚିଥିଲା ଆଉ ଏକ ଦାରୁଣ ଦୁଃସମ୍ବାଦ– ୮୧ ବର୍ଷ ବୟସରେ ତାଙ୍କ ମାତା ଅନ୍ନପୂର୍ଣ୍ଣା ରଥ ଶେଷନିଃଶ୍ୱାସ ତ୍ୟାଗ କରିଛନ୍ତି । ମା' ଚାଲିଗଲେ । ଦୀର୍ଘବର୍ଷର ସଂପର୍କର ଖିଅଟି ଛିଡି ଯାଇଥିଲା । ଶୁଖିଗଲା ପ୍ରେରଣା ଓ ଆଶୀର୍ବାଦର ସ୍ରୋତ । ନାଟକ ପାଇଁ ମା'ଙ୍କ ଶେଷଶଯ୍ୟା ନିକଟରେ ଉପସ୍ଥିତ ରହିବାର ସୌଭାଗ୍ୟ ତାଙ୍କର ଜୁଟିଲା ନାହିଁ । ନିଷ୍ଠୁର ମାନସିକ ଆଘାତ ଭିତରେ ମଧ୍ୟ କୌଣସି ପ୍ରକାରେ ସେହି ନାଟକଟିକୁ ସନ୍ଧ୍ୟାରେ ମଞ୍ଚସ୍ଥ କରାଇ ଶିଶୁ କଳାକାରଙ୍କ ଜଣେ ମୁରବୀ, ଅନ୍ତରଙ୍ଗ ଆଡଭୋକେଟ୍ ଦେବେନ୍ଦ୍ର ପରିଡ଼ାଙ୍କୁ ଦଳର ଦାୟିତ୍ୱ ଦେଇ ଭଙ୍ଗାମନରେ ସେ ରାତାରାତି ଟ୍ରେନ୍ ଯୋଗେ କଟକ ଅଭିମୁଖେ ଯାତ୍ରା କଲେ । ଟ୍ରେନ୍‌ରେ ସେ ଫେରୁଥିଲେ ଘରକୁ । ପୁରୀର ସ୍ୱର୍ଗଦ୍ୱାରରେ 'ସ୍ୱର୍ଗଦ୍ୱାର' ନାଟକର ନାଟ୍ୟକାରଙ୍କ ମା'ଙ୍କ ଶବ ସତ୍କାର ହେଉଥିଲା । ନାଟ୍ୟକାରଙ୍କ ଏକମାତ୍ର ପୁତ୍ର ଶିଳାଦିତ୍ୟ ଜେଜେମା'ଙ୍କୁ ମୁଖାଗ୍ନି ଦେଇଥିଲେ । ୩୦ ଘଣ୍ଟା ପରେ ନାଟ୍ୟକାର ଘରେ ପହଞ୍ଚିଲେ । ମାଆଙ୍କୁ ଜୀବନର ଶେଷ ମୁହୂର୍ତ୍ତରେ ଥରଟିଏ ପାଇଁ ଦେଖିବାର ସୁଯୋଗ ମଧ୍ୟ ମିଳିଲା ନାହିଁ । ସବୁବେଳେ ଜଣେ ଚାହେଁ, ଜୀବନର ଶେଷ ମୁହୂର୍ତ୍ତରେ ପୁତ୍ର-କନ୍ୟା, ଆତ୍ମୀୟ-ସ୍ୱଜନମାନେ ନିଜ ପାଖରେ ଥାଆନ୍ତୁ । କିନ୍ତୁ ଏହା ସମ୍ଭବ ହୋଇପାରି ନ ଥିଲା ତାଙ୍କ ଜୀବନରେ । ମାଆଙ୍କ ପରଲୋକରେ ବାପାଙ୍କ କଥା ବି ମନେ ପଡୁଥିଲା ପୁତ୍ର

କାର୍ତ୍ତିକଙ୍କର । ଜୀବନ ଯିବା ବେଳେ ପିତାଙ୍କ ନିକଟରେ ଉପସ୍ଥିତ ରହିବାର ସୌଭାଗ୍ୟରୁ ସେ ବଞ୍ଚିତ ହୋଇଥିଲେ । ଏବେ ମା'ଙ୍କ କ୍ଷେତ୍ରରେ ବି ତାହା ହିଁ ଘଟିଲା । ନିୟତିର ଏହା ବୋଧେ ଥିଲା ତାଙ୍କ ପ୍ରତି କ୍ରୂର ଇଙ୍ଗିତ... ନିଷ୍ଠୁର ଯନ୍ତ୍ରଣା !

ଅର୍ଥନୀତିର ଅଧ୍ୟାପକ ହୋଇ ମଧ୍ୟ ନାଟକ ତଥା ରଙ୍ଗମଞ୍ଚ କ୍ଷେତ୍ରରେ ଏକ ସ୍ୱର୍ବିତ ଉଚ୍ଚାରଣ - ଅଧ୍ୟାପକ କାର୍ତ୍ତିକ ଚନ୍ଦ୍ର ରଥ । ଜଣେ ବହୁମୁଖୀ ଓ ବହୁଚର୍ଚ୍ଚିତ ନାଟ୍ୟ-ପ୍ରତିଭା ରୂପେ ଆଦ୍ୟ ଷାଠିଏ ଦଶକରୁ ଏ ଯାବତ୍ ଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱ କାଳ ଧରି ସେ ଚଳଚଞ୍ଚଳ, ସୃଜନଶୀଳ ଓ ସାଧନାନିଷ୍ଠ ରହି ଆସିଛନ୍ତି । ଓଡ଼ିଆ ନବନାଟ୍ୟ ଆନ୍ଦୋଳନର ସେ ଜଣେ ପରାକ୍ରମୀ ଯୋଦ୍ଧା । ସଂପ୍ରତି ନାଟ୍ୟକାର, ନିର୍ଦ୍ଦେଶକ ଏବଂ ନାଟ୍ୟ-ସଂଗଠକ ଭାବେ ଜାତୀୟ ତଥା ଆନ୍ତର୍ଜାତିକ ସ୍ତରରେ ସେ ବହୁ ସୁଖ୍ୟାତି ଅର୍ଜନ କରିଛନ୍ତି । ଏହି ଯଶସ୍ୱୀ ନାଟ୍ୟକାରଙ୍କ ସୃଷ୍ଟି ସମ୍ଭାର ଶତାଧିକ ନାଟକ ଓ ଏକାଙ୍କିକାକୁ ନେଇ ସମୃଦ୍ଧ । କଥାବସ୍ତୁ, ଦୃଶ୍ୟ ଓ ମଞ୍ଚ ପରିକଳ୍ପନା, ସଂଳାପ ଓ ଚରିତ୍ରଚିତ୍ରଣ ସବୁ କ୍ଷେତ୍ରରେ ତାଙ୍କର ସ୍ୱକୀୟ ଓ ଅଭିନବ ସର୍ଜ୍ଜନା ଓଡ଼ିଆ ନାଟ୍ୟ-ସାହିତ୍ୟ ଓ ରଙ୍ଗମଞ୍ଚ ଶିଳ୍ପର ପରିସୀମାକୁ ସୁବିସ୍ତୃତ କରିବା ସହ ବହୁବର୍ଣ୍ଣ ଓ ବୈଚିତ୍ର୍ୟମଣ୍ଡିତ କରିପାରିଛି । ଯୁଗ-ଯନ୍ତ୍ରଣା ଓ ଜୀବନ ଚେତନାର ସ୍ୱର ଓ ସ୍ୱରୂପ ତାଙ୍କ ପ୍ରତିଟି ନାଟ୍ୟ-କୃତିରେ ସମର୍ଥ ଓ ସାର୍ଥକତାର ସହ ରୂପାୟିତ ହୋଇ ଆସିଛି । ମାନବିକ ସମ୍ବେଦନାର ସଂଚାରଣ ଓ ସାମାଜିକ ମୂଲ୍ୟବୋଧର ପ୍ରତିଷ୍ଠା ତାଙ୍କ ଅଙ୍ଗୀକାରବଦ୍ଧ ପ୍ରଗତିଧର୍ମୀ ନାଟ୍ୟଧାରାର ମୁଖ୍ୟ ସ୍ୱର ଓ ସ୍ୱାକ୍ଷର ।

### ।। ଦୃଶ୍ୟ : ତିନି ।।

୧୯୪୯ ମସିହା ମାର୍ଚ୍ଚ ୨୧ ତାରିଖରେ ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର ସହରର ଶଙ୍କରପୁର ସାହିରେ ନାଟ୍ୟକାର କାର୍ତ୍ତିକ ଚନ୍ଦ୍ର ରଥଙ୍କ ଜନ୍ମ । କାର୍ତ୍ତିକ ଚନ୍ଦ୍ର ରଥଙ୍କ ପିତାମହ ଦାମୋଦର ରଥ ହେଉଛନ୍ତି ଓଡ଼ିଆ ପୁସ୍ତକ ପ୍ରକାଶନ ଶିଳ୍ପର ଜଣେ ପୁରୋଧା ଓ ଅଗ୍ରଣୀ ପ୍ରତିଷ୍ଠାତା । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ତଥା ପରିଚାଳିତ 'ଷ୍ଟୁଡେଣ୍ଟସ୍ ଷ୍ଟୋର୍' ପୁସ୍ତକ ପ୍ରକାଶନ ସଂସ୍ଥା ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଆ ଭାଷା-ସାହିତ୍ୟ ତଥା ପାଠ୍ୟ-ପୁସ୍ତକ ପ୍ରକାଶନ କ୍ଷେତ୍ରରେ ନୂତନ ଦିଗ୍‌ଦର୍ଶନ ଦେଇଥିଲା । ଏହି ପୁସ୍ତକ ପ୍ରକାଶନ ସଂସ୍ଥା ସହିତ ବିଶ୍ୱନାଥ ଦାଶ (ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ), ବିପ୍ର ଚରଣ ଦାସ ସଂପୃକ୍ତ ଥିଲେ । ପରବର୍ତ୍ତୀ କାଳରେ ଏହି ପୁସ୍ତକ ପ୍ରକାଶନ ସଂସ୍ଥାର ଶାଖା ବ୍ରହ୍ମପୁର ସହ କଟକ, ସମ୍ବଲପୁର, ବାଲେଶ୍ୱର, ଜୟପୁରରେ ପ୍ରତିଷ୍ଠିତ ହୋଇଥିଲା । ଏହାର ପରିଚାଳନା ସହ ତାଙ୍କର ପିଉସା ଅନନ୍ତ ମିଶ୍ର, ଶ୍ରୀଧର ମହାପାତ୍ର ଓ ଗୋବିନ୍ଦ ଚରଣ ପାତ୍ର ପ୍ରମୁଖ ସଂପୃକ୍ତ ଥିଲେ । ପରବର୍ତ୍ତୀ ପିଢୀର ସହଦେବ ପ୍ରଧାନ, ଜଗନ୍ନାଥ ରଥ ପ୍ରମୁଖ ଏଥିରେ ଯୋଗ ଦେଇଥିଲେ । ପରବର୍ତ୍ତୀ

କାଳରେ ଏମାନେ ସମସ୍ତେ ନିଜସ୍ୱ ପ୍ରକାଶନ ସଂସ୍ଥା ପ୍ରତିଷ୍ଠା କରି ଓଡ଼ିଆ ପ୍ରକାଶନ କ୍ଷେତ୍ରକୁ ଉଜ୍ଜ୍ୱଳମୟ କରିଛନ୍ତି । ଦାମୋଦର ରଥଙ୍କ ଅନ୍ୟ ତିନି ଜଣ ପୁତ୍ର ରାମଚନ୍ଦ୍ର ରଥ, ସତ୍ୟନାରାୟଣ ମିଶ୍ର ଓ ଗୌରୀଶଙ୍କର ରଥ ଓଡ଼ିଶା ପବ୍ଲିଶିଂ ହାଉସ୍ ପୁସ୍ତକ ପ୍ରକାଶନ ସଂସ୍ଥା ଗଢ଼ି ଏହି ପ୍ରକାଶନ ଶିଳ୍ପକୁ ଆଗେଇ ନେଇଥିଲେ ।

କାର୍ତ୍ତିକ ଚନ୍ଦ୍ରଙ୍କ ପିତା ଗଣେଶ ପ୍ରସାଦ ପ୍ରଥମେ ଇଂରେଜ ସରକାରଙ୍କ ଅଧୀନରେ ଓ ସ୍ୱାଧୀନତା ପରେ ଭାରତ ସରକାରଙ୍କ ଅଧୀନରେ ଚାକିରି କରୁଥିଲେ । ମା’ ଅନ୍ନପୂର୍ଣ୍ଣା ରଥଙ୍କ ପ୍ରେରଣା ଓ ପ୍ରୋତ୍ସାହନ ପୁଅଙ୍କୁ ସବୁବେଳେ ନୂତନ ଦିଗ୍‌ଦର୍ଶନ ଦେଇ ଆସିଥିଲା । ସେହିପରି ଛାତ୍ର ଜୀବନରେ ତାଙ୍କର ତିନି ଭଉଣୀ ଶୈଳବାଳା, ସରୋଜିନୀ ଓ ସୁବାସିନୀ ପ୍ରତ୍ୟେକେ କଳା ଓ ସାହିତ୍ୟ ପ୍ରତି ଅନୁରାଗ ପ୍ରକାଶ କରିବା ସହ ଜ୍ୟେଷ୍ଠ ଭ୍ରାତା କାର୍ତ୍ତିକ ଚନ୍ଦ୍ରଙ୍କୁ ସବୁ କ୍ଷେତ୍ରରେ ସବୁମନ୍ତେ ସାହାଯ୍ୟ ସହଯୋଗ କରୁଥିଲେ ।

ପିତା ଭାରତ ସରକାରଙ୍କ ଅଧୀନରେ ଚାକିରି କରୁଥିବା ହେତୁ କାର୍ତ୍ତିକ ଚନ୍ଦ୍ରଙ୍କ ଶୈଶବ କଲିକତା, ଦିଲ୍ଲୀ, ସିମ୍‌ଲା, ଟାଟାନଗର, ଚାଇଁବସା, ବାରିପଦା, ବଡ଼ବିଲ ଆଦି ଅଞ୍ଚଳରେ ଅତିବାହିତ ହୋଇଥିଲା । ଓଡ଼ିଶା ବାହାରେ ରହି ହିନ୍ଦୀ ଅକ୍ଷର ପରିଚୟରୁ ନାଟ୍ୟକାରଙ୍କର ବିଦ୍ୟାରମ୍ଭ ହୋଇଥିଲା । ବି.ଏ. ଶ୍ରେଣୀରେ ପଢ଼ିବା ଯାଏ ତାଙ୍କର ଏମ୍.ଆଇ.ଏଲ୍ ଥିଲା ହିନ୍ଦୀ ।

ପିତା ଗଣେଶ ପ୍ରସାଦ ନୂଆ କରି ନିର୍ମାଣ କରାଯାଉଥିବା ପୃଥିବୀର ଦୀର୍ଘତମ ହୀରାକୁଦ ନଦୀବନ୍ଧ ଯୋଜନାରେ ଚାକିରି କରିବା ସମୟରେ ସମ୍ବଲପୁରରେ ଅବସ୍ଥାନ କାଳରେ କାର୍ତ୍ତିକ ଚନ୍ଦ୍ର ପ୍ରଥମେ ଗୁରୁପଡ଼ା ପ୍ରାଥମିକ ବିଦ୍ୟାଳୟ ଓ ତପ୍ରେ ତତ୍‌କାଳୀନ ପଟ୍ଟନାୟକପଡ଼ା ସ୍କୁଲରେ ବିଦ୍ୟାର୍ଜନ କରିଥିଲେ । ଓଡ଼ିଶା ସରକାରଙ୍କ ଅଧୀନରେ ଖଣି ବିଭାଗରେ ଉଚ୍ଚ ପଦବୀରେ ଚାକିରି କରିବା ଲକ୍ଷ୍ୟରେ ୧୯୫୬ ମସିହା ଜୁନ୍ ମାସରେ ପିତା ସପରିବାରେ କଟକ ଚାଲି ଆସିଲେ । କାର୍ତ୍ତିକ ଚନ୍ଦ୍ର ପ୍ରାରମ୍ଭରେ ଡଗରପଡ଼ା ପ୍ରାଥମିକ ବିଦ୍ୟାଳୟରେ ଅଧ୍ୟୟନ କରିଥିଲେ । ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଥିଲେ ଲୋକନାଥ ନନ୍ଦ । କିନ୍ତୁ ୧୯୫୭ ମସିହାରୁ ତାଙ୍କର ହାଇସ୍କୁଲ ଶିକ୍ଷା ଆରମ୍ଭ ହୋଇଥିଲା କଟକ ରେଭେନ୍ସା କଲିଜିଏଟ୍ ହାୟର ସେକେଣ୍ଡାରୀ ସ୍କୁଲରୁ । ଏହି ସ୍କୁଲରେ ଚତୁର୍ଥରୁ ଦ୍ୱାଦଶ ଶ୍ରେଣୀ ପର୍ଯ୍ୟନ୍ତ (୧୯୫୭-୧୯୬୬) ସେ ଅଧ୍ୟୟନ କରିଥିଲେ । ପ୍ରାରମ୍ଭରେ ତାଙ୍କର ପ୍ରଧାନ ଶିକ୍ଷକ ଥିଲେ ନାରାୟଣ ପତି ଏବଂ ପରେ ପରେ ପ୍ରଧାନ ଶିକ୍ଷକ ହୋଇ ଆସିଥିଲେ ନନ୍ଦ କିଶୋର ରଥ । ସେ ଉଭୟଙ୍କଠାରୁ ପ୍ରତ୍ୟକ୍ଷ ପ୍ରୋତ୍ସାହନ ଓ ପ୍ରେରଣା ପାଇ ଜଣେ ଅଧ୍ୟବସାୟୀ ଛାତ୍ର ହେବାକୁ ଚେଷ୍ଟିତ ଥିଲେ । ଅଧିକାଂଶ ବର୍ଷ ସେ ହୋଇଥିଲେ କ୍ଲାସ୍‌ର ମନିଟର୍... ସହପାଠୀ ଓ

ଶିକ୍ଷକମାନଙ୍କର ଅତି ପ୍ରିୟ । କ୍ଲାସ୍‌ରେ ମଜାମଜା ଗପ କହିବାରେ ସେ ଥିଲେ ଧୁରନ୍ଧର । ସ୍କୁଲ୍‌ରେ ଛାତ୍ର ଜୀବନରୁ ହିଁ ଆତ୍ମବିଶ୍ୱାସର ସହ ତାଙ୍କର ସାରସ୍ୱତ ରୁଚି ଓ ସଂଗଠନ ଶକ୍ତି ତଥା ସଂସ୍କୃତିପ୍ରେମ ଓ ନାଟ୍ୟ-ହୃଦୟ ସଂପ୍ରସାରିତ ହୋଇଥିଲା ।

ବୃତ୍ତିଗତ ଜୀବନରେ ପିତା ଗଣେଶ ପ୍ରସାଦଙ୍କୁ ବହୁ ସମସ୍ୟାର ସାମ୍ନା କରିବାକୁ ପଡି ଥିଲା । ଗଣେଶ ପ୍ରସାଦଙ୍କ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ମାଇନିଂ ଇଞ୍ଜିନିୟରିଙ୍ଗ୍ ଅଧ୍ୟୟନ କାଳରେ ସର୍ବପଲ୍ଲୀ ରାଧାକୃଷ୍ଣନ କୁଳପତି ଥିଲେ ଏବଂ ତାଙ୍କୁ ଜଣେ ମେଧାବୀ ଓଡ଼ିଆ ଛାତ୍ର ବୋଲି ଭଲ ଭାବେ ଜାଣିଥିଲେ । ପଣ୍ଡିତ ଜବାହରଲାଲ୍ ନେହେରୁଙ୍କ ସହ ତାଙ୍କର ବ୍ୟକ୍ତିଗତ ପରିଚୟ ଥିଲା । ଜଣେ ଉଚ୍ଚକୋଟିର ବୈଜ୍ଞାନିକ ତଥା ବିଶିଷ୍ଟ ଆବିଷ୍କାରକ ନିଜ ରାଜ୍ୟରେ, ନିଜ ମାଟିରେ କିଭଳି ଅବହେଳିତ ହୋଇ ଚରମ ଦୁର୍ଦ୍ଦଶା ଭୋଗ କରିଥାଏ, ଏହି ମର୍ମରେ ସେ ସେମାନଙ୍କ ନିକଟକୁ ପତ୍ର ଲେଖିଥିଲେ । କିନ୍ତୁ ସବୁ କ୍ଷେତ୍ରରେ ସମସ୍ତଙ୍କ ପ୍ରତିଶ୍ରୁତି ସତ୍ତ୍ୱେ ଶେଷ ପର୍ଯ୍ୟନ୍ତ ସେ ନ୍ୟାୟ ପାଇ ପାରି ନ ଥିଲେ । ଅତୀବ ବ୍ୟର୍ଥତା ମଧ୍ୟରେ ଘୋର ଆର୍ଥିକ ସଂକଟର ସମ୍ମୁଖୀନ ହୋଇ ସେ କଟକରେ ସ୍କୁଲ୍ ଓ କଲେଜର ଛାତ୍ରଛାତ୍ରୀମାନଙ୍କୁ ସେମାନଙ୍କ ଘରକୁ ଯାଇ ଇଂରାଜୀ, ବିଜ୍ଞାନ ଓ ଗଣିତ ଆଦି ବିଷୟରେ ଟିଉସନ୍ କରିବା ସହ ପୂର୍ବରୁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜ୍ୟୋତିଷ ଶାସ୍ତ୍ରରେ ଅଗାଧ ପାଣ୍ଡିତ୍ୟ ଥିବାରୁ ବିଭିନ୍ନ ବର୍ଗର ଲୋକଙ୍କ ଜାତକ ଗଣନା କରି ଯତ୍‌କିଞ୍ଚିତ୍ ଅର୍ଥ ଉପାର୍ଜ୍ଜନ କରିବାକୁ ଲାଗିଲେ । ସେହି ସମୟରେ ପରିବାର ଯେଉଁ ଚରମ ଦୁର୍ଦ୍ଦିନକୁ ସାମ୍ନା କରିଥିଲା, ତାହା ସନ୍ତ୍ର ବୟସରେ ଅଙ୍ଗେ ଲିଭାଇ ଥିଲେ କାର୍ତ୍ତିକ ଚନ୍ଦ୍ର । ତାଙ୍କ ଜୀବନ ଉପରେ ଏହି ଜ୍ୱଳନ ଗଭୀର ପ୍ରଭାବ ପକାଇଥିଲା । ନିଜ ଗୋଡ଼ରେ ନିଜେ କିପରି ଛିଡ଼ା ହେବେ ସେହି ଚିନ୍ତା ଦିନରାତି ଘାରିଥିଲା ତାଙ୍କୁ ।

ପରିବାରର ଦୟନୀୟ ଆର୍ଥିକ ସମସ୍ୟାକୁ ସୁଧାରିବା ପାଇଁ ବିଭିନ୍ନ ସମୟରେ ସେ ବିଭିନ୍ନ ବୃତ୍ତିରେ ପାର୍ଟ୍‌ଟାଇମ୍ କାମ କରିଥିଲେ । ସମାଜସେବୀ କ୍ରୀଡ଼ାବିତ୍ ଶୈଲେନ୍ ରାୟଙ୍କ ପରାମର୍ଶ କ୍ରମେ ସେ ସବୁଜ ସାହିତ୍ୟ ଯୁଗର ଅନ୍ୟତମ କବି ଶରତଚନ୍ଦ୍ର ମୁଖାର୍ଜୀଙ୍କ ବାସଭବନକୁ ଯାଇ ତାଙ୍କର ବ୍ୟବସାୟର ହିସାବକିତାବ ଆଦାୟ-ଖର୍ଚ୍ଚର ବିବରଣୀ ଲେଖି ଆକାଉଣ୍ଟସ୍ ରଖୁଥିଲେ । ତାଙ୍କର ଜଗତପୁରଠାରେ ପେଟ୍ରୋଲ୍ ପମ୍ପ୍ ବ୍ୟବସାୟ ଥିଲା । ଶରତ ମୁଖାର୍ଜୀ କାର୍ତ୍ତିକ ଚନ୍ଦ୍ରଙ୍କ ସାରସ୍ୱତ ପ୍ରତିଭା ସଂପର୍କରେ ଅବଗତ ହେଲା ପରେ ତାଙ୍କୁ ଉଚ୍ଚକୋଟିର ନାଟକ ରଚନା ନିମନ୍ତେ ପ୍ରେରଣା ଯୋଗାଇ ଥିଲେ । ଏହି ସମୟରେ ପ୍ରଫେସର୍ ବିଧୂଭୂଷଣ ଦାସଙ୍କ ମାତା କବୟିତ୍ରୀ ନିର୍ମଳା ଦେବୀଙ୍କ ହାତଲେଖା ପାଣ୍ଡୁଲିପିରେ ଥିବା କବିତାବଳୀକୁ ଏକତ୍ରିତ କରି ତାକୁ ସଂପାଦନା କରିବାର ଦାୟିତ୍ୱ ମଧ୍ୟ ତୁଲାଇ କିଛି

ପାରିଶ୍ରମିକ ପାଉଥିଲେ । ବିଶେଷ କରି ଯଶସ୍ୱୀ କବି ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ 'ଦିଗନ୍ତ' ପତ୍ରିକା ସଂପାଦନା କରୁଥିଲା ବେଳେ କାର୍ତ୍ତିକ ଚନ୍ଦ୍ରଙ୍କୁ ସେ ପ୍ରୁଫ୍ ସଂଶୋଧନର ଦାୟିତ୍ୱ ଦେଇଥିଲେ । ତାଙ୍କୁ ସେଥିପାଇଁ କିଛି ପାରିଶ୍ରମିକ ମିଳୁଥିଲା । ପରବର୍ତ୍ତୀ ସମୟରେ ମା' ଅନ୍ନପୂର୍ଣ୍ଣାଙ୍କ ଅନୁନୟ କ୍ରମେ 'ସମାଜ'ର ସଂପାଦକ ପଦ୍ମଶ୍ରୀ ରାଧାନାଥ ରଥ, ଡକ୍ଟର ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ, ବୀରେନ୍ ମିତ୍ର, ରଙ୍ଗନାଥ ମିଶ୍ର, ବାରିଷ୍ଟର୍ ରଣଜିତ୍ ମହାନ୍ତି, ଶକୁନ୍ତଳା ମହାନ୍ତି, କାମିନୀକାନ୍ତ ପଟ୍ଟନାୟକ, ନରସିଂହ କର, ହୃଦାନନ୍ଦ ନାୟକ, ଗଜାନନ ଅଗ୍ରୱାଲ୍ ପ୍ରମୁଖ ବହୁ ବିଶିଷ୍ଟ ଓ ବଦାନ୍ୟ ବ୍ୟକ୍ତି ତାଙ୍କୁ ପାଠ ପଢ଼ିବା ପାଇଁ କ୍ରମାଗତ ଭାବେ ଆର୍ଥିକ ସାହାଯ୍ୟ କରୁଥିଲେ ।

ରାଜ୍ୟର ଖ୍ୟାତନାମା ରେଭେନ୍ସା କଲିଜିଏଟ୍ ହାୟାର୍ ସେକେଣ୍ଡାରୀ ସ୍କୁଲ୍‌ରେ ଅଧ୍ୟୟନ କାଳରେ ସ୍କୁଲ୍‌ର ଚିତ୍ତାକର୍ଷକ ବାର୍ଷିକ ଉତ୍ସବଗୁଡ଼ିକରେ ଓଡ଼ିଆ, ହିନ୍ଦୀ ଓ ସଂସ୍କୃତ ନାଟକରେ କାର୍ତ୍ତିକଙ୍କ ନିଖୁଣ ଅଭିନୟ ତାଙ୍କୁ ବହୁ ପ୍ରଶଂସା ଆଣି ଦେଇଥିଲା । ସେତେବେଳେ ତାଙ୍କର ଶିକ୍ଷକ ଧନେଶ୍ୱର ମହାପାତ୍ର, ସୁଧାକର ମିଶ୍ର, ଅଭିରାମ ମହାପାତ୍ର, ବାସୁଦେବ ନାଥଶର୍ମା, କିଶୋରୀ ଚରଣ ମହାନ୍ତି, ନୀଳମାଧବ ବୋଷ, ଜଗମୋହନ ରାଠୋର, ନିର୍ମଳ ଚନ୍ଦ୍ର ମହାନ୍ତି, ଖେଳ ଶିକ୍ଷକ ଉଦୟନାଥ ପୃଷ୍ଟି ପ୍ରମୁଖ ପାଠପଢ଼ା ସହ ନାଟକ କ୍ଷେତ୍ରରେ ତାଙ୍କୁ ବେଶ୍ ପ୍ରୋତ୍ସାହନ ଦେଉଥିଲେ । ଠିକ୍ ସେହି ସମୟରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ଦ୍ୱାରା ପ୍ରତିଷ୍ଠିତ 'ପ୍ରଜାତନ୍ତ୍ର ପ୍ରଚାର ସମିତି' ଆନୁକୂଲ୍ୟରେ ପରିଚାଳିତ ଶିଶୁ-କିଶୋର ଅନୁଷ୍ଠାନ ମୀନାବଜାର ତଥା ମୀନାମଣ୍ଡଳୀର ବିଭିନ୍ନ ଶିଶୁ-କିଶୋର କାର୍ଯ୍ୟକ୍ରମରେ ପ୍ରତ୍ୟକ୍ଷ ଭାବେ ଅଂଶ ଗ୍ରହଣ ସାହିତ୍ୟ, ସାଂସ୍କୃତିକ ଓ ସାଂଗଠନିକ କ୍ଷେତ୍ରରେ କାର୍ତ୍ତିକ ଚନ୍ଦ୍ରଙ୍କ ଆଦ୍ୟ ଜୀବନକୁ ବହୁଳ ଭାବେ ପ୍ରଭାବିତ କରିଥିଲା । ପ୍ରାରମ୍ଭିକ ଅବସ୍ଥାନରେ କିଶୋର ଜୀବନରେ ସେ ଥିଲେ ଜଣେ ସୁସଂଗଠକ, ଗାୟକ, ମେଧାବୀ ଛାତ୍ର, ଗଳ୍ପ-ପ୍ରବନ୍ଧ-କବିତା-ଗୀତିକବିତା ରଚୟିତା । ଏପରିକି ଚିତ୍ରାଙ୍କନ ଓ ଖେଳକୁଦରେ ସେ ଥିଲେ ପାରଙ୍ଗମ । ଫୁଟବଲ୍, କ୍ରିକେଟ୍, ବ୍ୟାଡ୍‌ମିଣ୍ଟନ୍, କବାଡ଼ି ଇତ୍ୟାଦି କ୍ରୀଡ଼ାକ୍ଷେତ୍ରରେ ସେ ନିଜର ଦକ୍ଷତା ପ୍ରମାଣିତ କରିଥିଲେ । ସେ ଜଣେ ଭଲ ଖେଳାଳୀ ହୋଇଥିବାରୁ କଟକର ବିଭିନ୍ନ ସ୍କୁଲ୍‌କୁ ଯାଇ କଲିଜିଏଟ୍ ସ୍କୁଲ୍ ଓ ଅନ୍ୟ ସ୍କୁଲ୍‌ର ସମାସ୍କନ୍ଦ କ୍ଲାସ୍ ମଧ୍ୟରେ ବନ୍ଧୁତ୍ୱପୂର୍ଣ୍ଣ ଫୁଟ୍‌ବଲ୍ ମ୍ୟାଚ୍‌ର ଆୟୋଜନ କରୁଥିଲେ । ଏପରିକି ଥରେ ନିଜ ଦଳର ନେତୃତ୍ୱ ନେଇ ଭୁବନେଶ୍ୱରରେ ଯାଇ ଏକ ନମ୍ବର୍ କ୍ୟାପିଟାଲ ହାଇସ୍କୁଲ୍‌ର ସମାସ୍କନ୍ଦ ଶ୍ରେଣୀ ସହ ଫୁଟବଲ୍ ମ୍ୟାଚ୍ ଖେଳିଥିଲେ । ସ୍କୁଲ୍‌ର ନିଜସ୍ୱ ସନ୍‌ସାଇନ୍ ଫିଲ୍ଡ଼ ଥିଲା ତାଙ୍କର ପ୍ରିୟ ଖେଳପଡ଼ିଆ । ସ୍କୁଲ୍‌ର ବାର୍ଷିକ କ୍ରୀଡ଼ା ପ୍ରତିଯୋଗିତାରେ ସେ ସବୁବେଳେ ୧୦୦ମିଟର, ୨୦୦ମିଟର, ୪୦୦ ମିଟର ଓ ୮୦୦ ମିଟର ଦୌଡ଼ ବିଭାଗରେ ଅଂଶଗ୍ରହଣ କରି ପୁରସ୍କୃତ ହେଉଥିଲେ ।

ଭାରତ ସରକାରଙ୍କ ରାଷ୍ଟ୍ରୀୟ କ୍ରୀଡ଼ା ବିଭାଗ ଆନୁକୂଲ୍ୟରେ ଆୟୋଜିତ ସନ୍ତରଣ ପ୍ରତିଯୋଗିତା ଏବଂ କ୍ରସ୍ କଣ୍ଟ୍ରି ରେସ୍‌ରେ ଅଂଶଗ୍ରହଣ କରି ସେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲେ । ସ୍କୁଲ୍‌ଛୁଟି ହେଲେ କଟକର ବିଭିନ୍ନ କ୍ଲବ୍, ମନ୍ଦିର, ମଠ ଆଦିରେ ଆୟୋଜିତ ହେଉଥିବା କ୍ୟାରମ୍ ପ୍ରତିଯୋଗିତାରେ ମଧ୍ୟ ଭାଗ ନେଉଥିଲେ । ଥରେ କଟକସ୍ତରୀୟ କ୍ୟାରମ୍ ପ୍ରତିଯୋଗିତାରେ ଅଂଶଗ୍ରହଣ କରି ଶ୍ରେଷ୍ଠ କ୍ୟାରମ୍ ବୋର୍ଡ ଖେଳାଳୀ ଭାବେ ପୁରସ୍କୃତ ମଧ୍ୟ ହୋଇଥିଲେ ।

ପିଲାଦିନେ କାର୍ତ୍ତିକ ଚନ୍ଦ୍ରଙ୍କ ଅନ୍ୟ ଏକ ରୁଚି ଥିଲା ସିନେମା ଦେଖିବା । ସେତେବେଳେ କଟକରେ ମାତ୍ର ତିନୋଟି ହଲ୍ ଥିଲା-- କ୍ୟାପିଟାଲ୍, ପ୍ରଭାତ ଓ ହିନ୍ଦ୍ ସିନେମା । ପାଠପଢ଼ା ସରିଲେ ପ୍ରତି ସପ୍ତାହରେ ସିନେମା ଦେଖିବାକୁ ଅତି ବେଶି ଭଲ ପାଉଥିଲେ । ଶୀତଋତୁରେ ଗୁଡ଼ି ଉଡେଇବା ଥିଲା ତାଙ୍କର ଆଉ ଏକ ସଉକ । ସୂତା କିଣି ନିଜେ ମାଞ୍ଜା ଦେଇ ବଡ଼ ଲଟେଇରେ ଗୁଡ଼ି ଉଡ଼ାଇବାରେ ସେ ପ୍ରଚୁର ଆନନ୍ଦ ପାଉଥିଲେ । ପରିବାରର ଦୁଃଖ-ଦୈନ୍ୟ-ଜଞ୍ଜାଳରୁ କିଭଳି ଗେହ୍ଲାବସରର ଏକମାତ୍ର ଅପର୍ତ୍ତିଆ ପୁଅକୁ ଦୂରରେ ରଖି ହେବ, ସେଥିପାଇଁ ସବୁବେଳେ ମା' ଅନ୍ନପୂର୍ଣ୍ଣା ଚେଷ୍ଟା କରୁଥିଲେ । ପାଠପଢ଼ା ପ୍ରତି ଅଧିକ ଦୃଷ୍ଟି ଦେବାକୁ କହି ତାଙ୍କୁ ତାଙ୍କର ପ୍ରତ୍ୟେକ କାର୍ଯ୍ୟରେ ସମର୍ଥନ ଓ ସହଯୋଗ ଯୋଗାଇ ଦେଉଥିଲେ । କିନ୍ତୁ ଅଭିନୟ, ନାଟକ ଓ ରଙ୍ଗମଞ୍ଚ ପ୍ରତି ଆକର୍ଷଣ ବଢ଼ିବା ପରେ ସେ ଖେଳକୁଦ ଆଦିରୁ ଦୂରେଇ ଯାଇଥିଲେ ।

ସ୍କୁଲ୍‌ରେ ଛାତ୍ର ଜୀବନରୁ ଓଡ଼ିଆ ସହ ହିନ୍ଦୀ, ଇଂରାଜୀ ଏପରିକି ବଙ୍ଗଳା ଭାଷାରେ ସେ ଥିଲେ ସୁବକ୍ତା । ଓଡ଼ିଆ ଓ ହିନ୍ଦୀ ବକ୍ତୃତା ପ୍ରତିଯୋଗିତାରେ ଭାଗ ନେଇ ବହୁ ପୁରସ୍କାରର ବିଜେତା ହୋଇଥିଲେ ସେ । ବିଭିନ୍ନ ସାହିତ୍ୟ ସଭାରେ କବିତା ପାଠ କରିବା ତାଙ୍କର ଏକ ଝୁଙ୍କ୍ ହୋଇ ଯାଇଥିଲା । ତାଙ୍କ ସାନଭଉଣୀ ଶୈଳବାଳା କାର୍ତ୍ତିକ ଚନ୍ଦ୍ରଙ୍କ ସାଂସ୍କୃତିକ ଜୀବନକୁ ଅଧିକ ଗତିଶୀଳ ଓ ସାର୍ଥକ କରିବାରେ ଅଗ୍ରଣୀ ଭୂମିକା ନିର୍ବାହ କରିଥିଲେ ।

ସତ୍ୟଶଙ୍କର ମିଶ୍ରଙ୍କ ପ୍ରୋତ୍ସାହନରେ ପ୍ରଥମେ 'ବନ୍ଦନା ମୀନାମଣ୍ଡଳୀ' ପକ୍ଷରୁ ପ୍ରତିନିଧିତ୍ୱ କରି କଟକରେ ଆୟୋଜିତ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ହାସ୍ୟରସାତ୍ମକ/ ବ୍ୟଙ୍ଗାତ୍ମକ ଏକକ ଅଭିନୟ କରିବାରେ ତାଙ୍କର ଅଦ୍ଭୁତ ପଟୁତା ଥିଲା । ପରବର୍ତ୍ତୀ ସମୟରେ ବାବୁଲାଲ୍ ଦୋଷୀ ( ବାବୁଭାଇ )ଙ୍କ ଆମନ୍ତ୍ରଣ କ୍ରମେ ସେ 'କଳା ବିକାଶ ମୀନାମଣ୍ଡଳୀ'ରେ ଯୋଗ ଦେଇଥିଲେ ।

୧୯୬୧ ମସିହାରେ ନୂତନ ଭାବେ ପ୍ରତିଷ୍ଠିତ କଟକ ୱାଇ.ଏମ୍.ସି.ଏ. ପକ୍ଷରୁ ପୁରୀ ସମୁଦ୍ରବେଳାରେ ତିନି ସପ୍ତାହବ୍ୟାପୀ କଟକର ବିଭିନ୍ନ ସ୍କୁଲ୍‌ର ଛାତ୍ରମାନଙ୍କୁ ନେଇ

ଏକ ଶ୍ରମଦାନ ଶିବିର ଅନୁଷ୍ଠିତ ହୋଇଥିଲା । ସେତେବେଳେ ସେ ସପ୍ତମ ଶ୍ରେଣୀର ଛାତ୍ର । ଶିବିରର ଉଦ୍‌ଯାପନୀ ଉତ୍ସବରେ ସେ ଏକ ହାସ୍ୟରସାତ୍ମକ ଏକାଙ୍କିକା ଲେଖି ଅନ୍ୟ ଛାତ୍ରବନ୍ଧୁମାନଙ୍କୁ ନେଇ ଅଭିନୟ କରିଥିଲେ । ସେଥିରେ ଅଂଶ ଗ୍ରହଣ କରିଥିଲେ ସ୍ୱରୂପ ନାୟକ, ଅମରେଶ ପଟ୍ଟନାୟକ, ନାରାୟଣ ସିଂହ, ବିଜୟ ଚକ୍ରବର୍ତ୍ତୀ, ଶକ୍ତିଭୂଷଣ ସେନ୍‌ଗୁପ୍ତ ପ୍ରମୁଖ । ସଂପ୍ରତି ସେମାନେ ନିଜ ନିଜ କ୍ଷେତ୍ରରେ ପ୍ରତିଷ୍ଠିତ । ଏହା ଥିଲା ତାଙ୍କ ଜୀବନର ସୃଜନଶୀଳ ନାଟ୍ୟ ପ୍ରତିଭାର ପ୍ରଥମ ପରିଚୟ... ପହିଲି ପୁଲକ । ଏହିଠାରୁ ଆରମ୍ଭ ହୋଇଥିବା ଯାତ୍ରା ପଥ ବେଶ୍ ପ୍ରଲମ୍ବିତ ହୋଇଯାଇଥିଲା ଆଗକୁ ଆଗକୁ ।

ଠିକ୍ ତା' ପରବର୍ଷ ୧୯୬୨ ମସିହାରେ ପ୍ରଜାତନ୍ତ୍ର ମୀନାବଜାର ପକ୍ଷରୁ ଅନ୍ୟ ଏକ ସ୍ୱେଚ୍ଛାସେବୀ ଶିବିର ଅନୁଷ୍ଠିତ ହୋଇଥିଲା ପୁରୀର ବାଲିସାହିଠାରେ । ସେଠାରେ ଓଡ଼ିଶାର ବିଭିନ୍ନ ମୀନାମଣ୍ଡଳୀର ପ୍ରାୟ ୬୦ ଜଣ ମୀନା ଭାଇଭଉଣୀ ଯୋଗ ଦେଇଥିଲେ । ଏହି ଶିବିରରେ ମଧ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମରେ କାର୍ତ୍ତିକ ଚନ୍ଦ୍ର ପ୍ରମୁଖ ଭୂମିକା ଗ୍ରହଣ କରି ମନଛୁଆଁ ଏକକ ଅଭିନୟ ଓ ଏକାଙ୍କିକା ପରିବେଷଣ କରିଥିଲେ । ଶିବିରର ମୁଖ୍ୟ ପରିଚାଳକ ଥିଲେ 'ଜହ୍ନୁରୀଭାଇ' : ରାମପ୍ରସାଦ ମହାନ୍ତି ଓ ସହପରିଚାଳିକା ଥିଲେ ସୌଦାମିନୀ ରଥ ।

ରେଭେନ୍ସା କଲିଜିଏଟ୍ ସ୍କୁଲରେ ପଢ଼ିଲା ବେଳେ ସେ ଜଣେ ସଫଳ ଓ ସମର୍ଥ ଅଭିନେତା ରୂପେ ନିଜକୁ ପ୍ରମାଣିତ କରିସାରିଥିଲେ । ୧୯୬୩ ମସିହାରେ ନବମ ଶ୍ରେଣୀର ଛାତ୍ର ଥିବା ବେଳେ କାର୍ତ୍ତିକ ଚନ୍ଦ୍ର ରଚନା କରିଥିଲେ ତାଙ୍କର ପ୍ରଥମ ନାଟକ 'ଏଇ ଦେଶ ଏଇ ମାଟି' । ସେହି ବର୍ଷ କଟକର ଜନତା ରଙ୍ଗମଞ୍ଚରେ ଆୟୋଜିତ ମୌସୁମୀ କଲ୍‌ଚରାଲ୍ ଆସୋସିଏସନ୍‌ର ପ୍ରଥମ ବାର୍ଷିକ ଉତ୍ସବରେ ଗ୍ରାମ୍ୟ-ଜୀବନଭିତ୍ତିକ ଏଇ ନାଟକଟି ପରିବେଷିତ ହୋଇଥିଲା । ସେ ଥିଲେ ଏଇ ନାଟକର ନିର୍ଦ୍ଦେଶକ ତଥା ଖଳନାୟକ ଏବଂ ସାନଭଉଣୀ ଶୈଳବାଳା ଅଭିନୟ କରିଥିଲେ ସହଅଭିନେତ୍ରୀ ଭୂମିକାରେ । ଏହି ନାଟକ ପ୍ରସ୍ତୁତିରେ ମୁଖ୍ୟ ଉପଦେଷ୍ଟା ଥିଲେ ମଞ୍ଚ-ନାଟ୍ୟବିତ୍ ଧୀରେନ୍ ଦାସ ଏବଂ ପରାମର୍ଶଦାତା ଥିଲେ ସମ୍ବଲପୁରର ସ୍ୱନାମଧନ୍ୟ ଅଭିନେତା ରାଜେନ୍ଦ୍ର ପଣ୍ଡା । ତାଙ୍କ ରଚିତ ଏହି ପ୍ରଥମ ନାଟକଟିର ମଞ୍ଚ ସଫଳତା ତାଙ୍କୁ ବହୁ ପ୍ରଶଂସା ଓ ପ୍ରଚୁର ପ୍ରେରଣା ଆଣି ଦେଇଥିଲା ।

୧୯୬୪ ମସିହାରେ କଟକ ଇଞ୍ଜିନିୟରିଂ ସ୍କୁଲ୍ ପ୍ରେକ୍ଷାଳୟରେ ଅନୁଷ୍ଠିତ ରାଜ୍ୟସ୍ତରୀୟ ଶିଶୁ-ନାଟକ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରି ତାଙ୍କର 'ଏଇ ଦେଶ ଏଇ ମାଟି' ନାଟକଟି ସର୍ବଶ୍ରେଷ୍ଠ ନାଟକ ରୂପେ ପୁରସ୍କୃତ ହୋଇଥିଲା । ପରବର୍ତ୍ତୀ ସମୟରେ ରାଜ୍ୟ ସରକାରଙ୍କ ପକ୍ଷରୁ ପଞ୍ଚାୟତିରାଜ ଓ ଗୋଷ୍ଠୀ ଉନ୍ନୟନ ବିଭାଗର ସାହିତ୍ୟ

ପ୍ରତିଯୋଗିତାରେ ଅଂଶ ଗ୍ରହଣ କରି ଏଇ ନାଟକଟି ଅର୍ଥରାଶି ସହ ସତନ୍ତ୍ର ପୁରସ୍କାର ମଧ୍ୟ ଲାଭ କରିଥିଲା । ସେତେବେଳେ ବହୁବାର ଅଭିନୀତ ଏଇ ନାଟକଟିର ମୁଖ୍ୟ ଭୂମିକାରେ ବିଭିନ୍ନ ପର୍ଯ୍ୟାୟରେ ଅଭିନୟ କରିଥିଲେ ତରୁଣ ନାଟ୍ୟକାର କାର୍ତ୍ତିକ ଚନ୍ଦ୍ରଙ୍କ ସ୍କୁଲ୍ ଜୀବନର ସାଥି ଶକ୍ତିଭୂଷଣ ସେନ୍‌ଗୁପ୍ତ, କାଳୀପ୍ରସାଦ ପଟ୍ଟନାୟକ, ପ୍ରଭାତ କୁମାର ନନ୍ଦ, ଅଭୟ କୁମାର ମହାନ୍ତି, ଚଳଚ୍ଚିତ୍ର ଜଗତର ଶିଶୁଶିଳ୍ପୀ ଇନ୍ଦ୍ରଜିତ୍ ଘୋଷ ଓ ବିଜୟ ମହାନ୍ତି, ପ୍ରଦୀପ ମିତ୍ର, ଜୟଶ୍ରୀ ମିଶ୍ର ପ୍ରମୁଖ ।

ନାଟ୍ୟକାର କାର୍ତ୍ତିକ ଚନ୍ଦ୍ରଙ୍କ ନେତୃତ୍ୱରେ ସାଥି ତରୁଣ ଶିଳ୍ପୀମାନଙ୍କ ଦ୍ୱାରା ବହୁ ପ୍ରଶଂସିତ ଏହି 'ଏଇ ଦେଶ ଏଇ ମାଟି' ନାଟକଟି ସେହି ସମୟରେ ଇଂରାଜୀ ଅଧ୍ୟାପକ ରାଜ କିଶୋର ମିଶ୍ରଙ୍କ ଉଦ୍ୟମରେ ଜଗତସିଂହପୁର ସ୍ୱାମୀ ବିବେକାନନ୍ଦ ସ୍ମାରକୀ ମହାବିଦ୍ୟାଳୟର ବାର୍ଷିକ ଉତ୍ସବ ଅବସରରେ ଏବଂ ପରବର୍ତ୍ତୀ ସମୟରେ ତାଙ୍କ ସ୍କୁଲ ଜୀବନର ସହପାଠୀ ତଥା କଲେଜ ୟୁନିୟନ୍‌ର ସଭାପତି ଶ୍ରୀକାନ୍ତ ଜେନାଙ୍କ ଆମନ୍ତ୍ରଣ କ୍ରମେ କେନ୍ଦ୍ରାପଡ଼ା କଲେଜର ବାର୍ଷିକ ସାଂସ୍କୃତିକ ଉତ୍ସବରେ ଅଭିନୀତ ହୋଇଥିଲା ।

୧୯୬୩ ମସିହାରେ ସୃଷ୍ଟି କରିଥିଲେ ତାଙ୍କର ଦ୍ୱିତୀୟ ନାଟକ 'ଦୁଇଟୋପା ଲୁହ' । ତା'ର ମୁଖ୍ୟ ଅଭିନେତା ଓ ନିର୍ଦ୍ଦେଶକ ଥିଲେ ସ୍ୱୟଂ ନାଟ୍ୟକାର ଶ୍ରୀ ରଥ । 'ଦୁଇଟୋପା ଲୁହ' ନାଟକଟି ୧୯୬୫ ମସିହାରେ ପ୍ରଜାତନ୍ତ୍ର ପରିସରରେ ମୀନାବଜାର ପକ୍ଷରୁ ଆୟୋଜିତ ଆନ୍ତଃ ମୀନାମଣ୍ଡଳୀସ୍ତରୀୟ ଶିଶୁ ନାଟକ ପ୍ରତିଯୋଗିତରେ ସତନ୍ତ୍ର ପୁରସ୍କାର ଲାଭ କରିଥିଲା ବେଳେ ସ୍ୱରାଜ ଆଶ୍ରମ ପରିସରରେ କଂଗ୍ରେସ ସେବାଦଳ ପକ୍ଷରୁ ଆୟୋଜିତ ରାଜ୍ୟସ୍ତରୀୟ ନାଟକ ପ୍ରତିଯୋଗିତାରେ ଶ୍ରେଷ୍ଠ ନାଟକ ରୂପେ ବିବେଚିତ ହୋଇଥିଲା । ତରୁଣ ବୟସରେ ଏକକ ଅଭିନୟ, ଦୁଇ ତିନୋଟି ଏକାଙ୍କିକା ରଚନା ଏବଂ ଶେଷରେ ପୂର୍ଣ୍ଣାଙ୍ଗ ନାଟକ ରଚନା କରି ସେ ନିଜର ଏକ ସତନ୍ତ୍ର ପରିଚୟ ସୃଷ୍ଟି କରିପାରିଥିଲେ । ଅଭିନୟରୁ ନାଟ୍ୟରଚନା, ନାଟ୍ୟରଚନାରୁ ନିର୍ଦ୍ଦେଶନା, ନିର୍ଦ୍ଦେଶନାରୁ ନାଟ୍ୟ-ସଂଗଠନ ତାଙ୍କୁ ଛାତ୍ର ଜୀବନରୁ ହିଁ ସ୍ୱନାମଧନ୍ୟ କରି ପାରିଥିଲା । ପ୍ରଥମ ଦୁଇଟି ନାଟକ ରାଜ୍ୟସ୍ତରୀୟ ନାଟକ ପ୍ରତିଯୋଗିତାରେ ଶ୍ରେଷ୍ଠ ବିବେଚିତ ହେଲା ପରେ ଏ କ୍ଷେତ୍ରରେ ତାଙ୍କର ଉତ୍ସାହ ଓ ଉଦ୍ଦୀପନା ବହୁମାତ୍ରାରେ ବଢ଼ି ଯାଇଥିଲା ।

୧୯୬୪ ମସିହାରେ ସେ ଆଉ ଦୁଇଟି ଦେଶାତ୍ମବୋଧକ ନାଟକ ଲେଖିଥିଲେ– 'ଦୀପ ଲିଭି ଲିଭି ଯାଏ' ଓ 'ଗୋଟିଏ ସାଗର କୋଟିଏ ଢେଉ' । ୧୯୬୨ ମସିହାରେ ସଂଘଟିତ ଭାରତ-ଚୀନ ଯୁଦ୍ଧର ଅବତାରଣାରେ ଦେଶପ୍ରେମ ଜାଗ୍ରତ କରିବା ଲକ୍ଷ୍ୟରେ ତରୁଣ ନାଟ୍ୟକାର କାର୍ତ୍ତିକ ଚନ୍ଦ୍ର ଏହାକୁ ରଚନା କରିଥିଲେ । 'ଦୀପ ଲିଭି ଲିଭି ଯାଏ'

ଜନତା ରଙ୍ଗମଞ୍ଚରେ ଅଭିନୀତ ହୋଇଥିଲା ବେଳେ 'ଗୋଟିଏ ସାଗର କୋଟିଏ ଢେଉ' ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ରଙ୍ଗମଞ୍ଚରେ ଅଭିନୀତ ହୋଇଥିଲା । ନାଟକ ମଞ୍ଚସ୍ଥ କରିବା ନିମନ୍ତେ ଅର୍ଥ ସଂଗ୍ରହ ପାଇଁ ନିଜ ସାନଭଉଣୀ ଶୈଳବାଳା ଓ ଅନ୍ୟ ସାଥିମାନଙ୍କୁ ନେଇ କଟକ ସହରର ମୁଖ୍ୟ ବଜାରରେ ଥିବା ବଡ଼ ବଡ଼ ଲୁଗା ଓ ସୁନା ଦୋକାନ, ଏପରିକି ମାଲଗୋଦାମର ବିଭିନ୍ନ ଦୋକାନକୁ ଯାଇ ଦୁଇ ଟଙ୍କିଆ ଓ ପାଞ୍ଚ ଟଙ୍କିଆ ଟିକେଟ୍ ବିକ୍ରି କରିବାକୁ ପଡୁଥିଲା । ଗୋଟିଏ ପଟେ ଅପରାହ୍ଣରେ ଅର୍ଥ ସଂଗ୍ରହ ଓ ଅନ୍ୟ ପଟେ ସନ୍ଧ୍ୟାରେ ନାଟକ ପ୍ରସ୍ତୁତିଜନିତ ଅଭ୍ୟାସ– ଏଇ ଦୁଇଟିକୁ ନେଇ ତାଙ୍କୁ ବହୁ ସଂଗ୍ରାମ କରିବାକୁ ପଡ଼ିଥିଲା । ସୁନାମୁଦି ବନ୍ଧା ପକାଇ ଜନତା ରଙ୍ଗମଞ୍ଚର ହଲ୍ ଭଡ଼ା ନାଟ୍ୟକାରଙ୍କୁ ଦେବାକୁ ପଡ଼ିଥିବା ବେଳେ ଫିଲିପ୍ସ ସାଇକେଲ୍ ବନ୍ଧା ପକାଇ 'ଗୋଟିଏ ସାଗର କୋଟିଏ ଢେଉ' ନାଟକ ଅଭିନୟ ବେଳେ ରୂପସଜ୍ଜା, ପୋଷାକ ପରିପାଟୀ ତଥା ଶବ୍ଦ ଓ ଲାଇଟ୍ ବାବଦ ଖର୍ଚ୍ଚ କରିଥିଲେ ସେ । ଏପରିକି ତାଙ୍କ ଅନ୍ୟତମ ବନ୍ଧୁ ସୂର୍ଯ୍ୟ ସାହୁଙ୍କୁ ନେଇ କଲିକତା ଯାଇ ବିଶ୍ୱ ପ୍ରସିଦ୍ଧ ରହସ୍ୟଧର୍ମୀ ଚଳଚ୍ଚିତ୍ର ନିର୍ଦ୍ଦେଶକ ଆଲ୍‌ଫ୍ରେଡ୍ ହିଚ୍‌କକ୍‌ଙ୍କ ଏକ ରହସ୍ୟ ରୋମାଞ୍ଚଭରା ଇଂରାଜୀ ସିନେମା 'ଷ୍ଟ୍ରେଞ୍ଜର୍ ଇନ୍ ଦି ଟ୍ରେନ୍' ଭଡ଼ାସୂତ୍ରରେ ଆଣି କଟକର ସହିଦ ଭବନଠାରେ ଥିବା ତତ୍‌କାଳୀନ ୟୁନାଇଟେଡ୍ ଟକିଜ୍‌ରେ ଚାରିଟି ଶୋ କରାଇ ଟିକେଟ୍ ବିକ୍ରି ଲବ୍ଧ ଅର୍ଥକୁ ସଂଗ୍ରହ କରି ବହୁକଷ୍ଟ ସ୍ୱୀକାର ପୂର୍ବକ 'ଗୋଟିଏ ସାଗର କୋଟିଏ ଢେଉ' ନାଟକଟିକୁ ମଞ୍ଚସ୍ଥ କରାଇଥିଲେ । ଅଳ୍ପ ବୟସରେ ସେତେବେଳେ କେବଳ ନାଟକ ପାଇଁ ତାଙ୍କର ଏଭଳି ଦୁଃସାହସିକ କାର୍ଯ୍ୟ ଅଧିକ ପ୍ରଶଂସନୀୟ । ୧୭୦୦ ଟଙ୍କା ଖର୍ଚ୍ଚ କରି ସେ ଏଥିରୁ ୨୨୦୦ ଟଙ୍କା ସଂଗ୍ରହ କରି ଅବଶିଷ୍ଟ ୫୦୦ ଟଙ୍କା ନାଟକ ଅଭିନୟ ପାଇଁ ଖର୍ଚ୍ଚ କରିଥିଲେ । ସେତେବେଳେ ସେ ଦଶମ ଶ୍ରେଣୀର ଛାତ୍ର ।

୧୯୬୪ ମସିହାରେ ସଂଘଟିତ ଐତିହାସିକ ଛାତ୍ର ଆନ୍ଦୋଳନ ସମୟରେ ରେଭେନ୍ସା କଲିଜିଏଟ୍ ସ୍କୁଲ୍‌ର ଛାତ୍ର କାର୍ତ୍ତିକ ଚନ୍ଦ୍ର ସ୍କୁଲ୍ ଛାତ୍ରମାନଙ୍କ ମଧ୍ୟରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଚୌଧୁରୀ ବଜାର ମ୍ୟୁନିସ୍‌ପାଲିଟି ନିକଟସ୍ଥ ଚନ୍ଦନ ପଡ଼ିଆରେ ସହସ୍ରାଧିକ କଲେଜ ଛାତ୍ରଙ୍କ ସହ ମିଶି ବିକ୍ଷୋଭ ପ୍ରଦର୍ଶନ କଲା ବେଳେ ପୋଲିସ୍ ପକ୍ଷରୁ ଲାଠିଚାର୍ଜ ହେବାରୁ ତାଙ୍କର ମୁଣ୍ଡ ଫାଟିଯାଇଥିଲା । ଏହା ପରେ ସେ ରାଜ୍ୟସ୍ତରୀୟ ଛାତ୍ର ସଂଗଠନ 'ଷ୍ଟୁଡ଼େଣ୍ଟସ୍ ୟୁନିୟନ୍' ସହ ସଂପୃକ୍ତ ହୋଇଥିଲେ ।

୧୯୬୬ ମସିହାରେ ରେଭେନ୍ସା କଲିଜିଏଟ୍ ସ୍କୁଲ୍‌ରୁ ବିଜ୍ଞାନରେ ହାୟାର୍ ସେକେଣ୍ଡାରୀ ପାସ୍ କରିଥିଲେ ହେଁ ନାଟକର ନିଶା ହେତୁ ରେଭେନ୍ସା କଲେଜରେ କାର୍ତ୍ତିକ ଚନ୍ଦ୍ର ବି.ଏ. ପ୍ରଥମ ବର୍ଷ ଶ୍ରେଣୀର କଳା ବିଭାଗରେ ନାମ ଲେଖୀଇଥିଲେ । ପ୍ରଥମ ବର୍ଷ

ଶ୍ରେଣୀରେ ପଢ଼ିଲା ବେଳେ ହିଁ ନିଜ ନାଟ୍ୟ ପ୍ରତିଭା ପାଇଁ କଲେଜ ୟୁନିୟନ୍ ନିର୍ବାଚନରେ ଜିଣି ନାଟ୍ୟ ସଂସଦର ସେ ସଂପାଦକ ହୋଇ ପାରିଥିଲେ । ନାଟ୍ୟ ସଂସଦର ବାର୍ଷିକ ଉତ୍ସବ ଅବସରରେ ପ୍ରଥମ ଥର ପାଇଁ ଓଡ଼ିଆ ବିଭାଗର ବରିଷ୍ଠ ଛାତ୍ର ନିରଞ୍ଜନ ପଣ୍ଡା ଓ ସାଥିଙ୍କ ଦ୍ୱାରା ଲୋକନାଟ୍ୟ 'ପାଲା' ପରିବେଷଣର ଆୟୋଜନ କରିଥିଲେ । ସେହିପରି କଲେଜରେ ପ୍ରଥମ ଥର ପାଇଁ ଏକ ହିନ୍ଦୀ ନାଟକ 'ଶହୀଦ୍ ଭଗତ୍ ସିଂହ' ପ୍ରଦର୍ଶନ କରାଇଥିଲେ । ଏହି ହିନ୍ଦୀ ନାଟକଟିକୁ ସେ ନିଜେ ରଚନା କରିବା ସହ ସେଥିରେ ଅଭିନୟ ମଧ୍ୟ କରିଥିଲେ ।

ନାଟକ ଓ ରଂଗମଞ୍ଚ ହିଁ ଥିଲା କାର୍ତ୍ତିକ ଚନ୍ଦ୍ରଙ୍କ ପ୍ରଥମ ପସନ୍ଦ... ସାମାଜିକ ତଥା ସାଂସ୍କୃତିକ କ୍ଷେତ୍ରରେ ନେତୃତ୍ୱ ନେବାର ପ୍ରଧାନ ମାଧ୍ୟମ । ଛାତ୍ର ଜୀବନରେ ଆଶାତୀତ ସଫଳତା, ବିଭିନ୍ନ ପ୍ରତିଯୋଗିତା ଏବଂ ଉତ୍ସବରେ ପୁରସ୍କାର ଓ ସମ୍ମାନ ଲାଭ, ପତ୍ର-ପତ୍ରିକାରେ ପ୍ରଶଂସା ଓ ପ୍ରେରଣଦାୟୀ ସମ୍ବାଦ ପ୍ରକାଶନ ତାଙ୍କର ପ୍ରତିଭା ବିକାଶରେ ଯଥେଷ୍ଟ ସହାୟକ ହୋଇପାରିଥିଲା । ତରୁଣ ବୟସରେ ନିଷ୍ଠା ଓ ଉଦ୍ଦମତା ସହ ସୃଷ୍ଟି ଓ ସାଧନା ଘଟଣା କ୍ରମରେ ତାଙ୍କୁ ଶ୍ରାବଣୀ, ସପ୍ତର୍ଷି, ସପ୍ତଧାରା, କଳାତୀର୍ଥ ଭଳି ସାଂସ୍କୃତିକ ସଂଗଠନ ଗଢ଼ିବାକୁ ପ୍ରେରଣା ଯୋଗାଇଥିଲା ।

୧୯୬୦ ମସିହା ବେଳକୁ କଟକର ଦୁଇଟି ବ୍ୟବସାୟିକ ରଙ୍ଗମଞ୍ଚ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ଥିଏଟର୍ ଓ ଜନତା ରଂଗମଞ୍ଚ ଚିରାଚରିତ ପ୍ରଥାରେ ପାରମ୍ପରିକ ନାଟକମାନ ପରିବେଷଣ କରିଚାଲିଥିଲେ । ପରେ ପରେ ସେହି ପ୍ରଥାକୁ ଅନୁସରଣ କରି ସ୍ଥାପିତ ହୋଇଥିଲା ପେଷାଦାର୍ କଳାଶ୍ରୀ ଥିଏଟର୍ । ସେତିକିବେଳେ ନାଟ୍ୟକାର ମନୋରଞ୍ଜନ ଦାସ, ବିଶ୍ୱଜିତ୍ ଦାସ, ବିଜୟ ମିଶ୍ର, ପ୍ରାଣବନ୍ଧୁ କର, ଅକ୍ଷୟ କୁମାର ମହାନ୍ତି ପ୍ରମୁଖ ନାଟ୍ୟକାର ତଥା ଅନନ୍ତ ମହାପାତ୍ର, ହେମନ୍ତ କୁମାର ଦାସ, ଗୋବିନ୍ଦ ତେଜ୍, ବ୍ରଜ ମହାନ୍ତି, ଅଜୟ କୁମାର ମହାନ୍ତି ପ୍ରମୁଖ ନିର୍ଦ୍ଦେଶକ/ଅଭିନେତା ନିଜ ନିଜର ସୃଜନଶୀଳ ଚିନ୍ତା ଓ ପରିକଳ୍ପନା ଦ୍ୱାରା ଓଡ଼ିଶାର ରଙ୍ଗମଞ୍ଚ କ୍ଷେତ୍ରରେ ଆଙ୍ଗିକ ଓ ଆତ୍ମିକ ଉଭୟ ଦୃଷ୍ଟିକୋଣରୁ ନୂତନ ପ୍ରୟୋଗ ଓ ଅଭିନବ ଶୈଳୀ ପ୍ରୟୋଗ କରି ନବନାଟ୍ୟ ଆନ୍ଦୋଳନର ସୂତ୍ରପାତ ଘଟାଇଥିଲେ । ସେତିକିବେଳେ ୧୯୬୫ ମସିହାରେ ନବନାଟ୍ୟ ଧାରାରେ ସାମିଲ୍ ହୋଇ ନାଟ୍ୟକାର କାର୍ତ୍ତିକ ଚନ୍ଦ୍ର ରଚନା କରିଥିଲେ ଦୁଇଟି ପ୍ରତୀକାତ୍ମକ, ପରୀକ୍ଷାମୂଳକ ତଥା ପ୍ରୟୋଗଧର୍ମୀ ନାଟକ 'ଏ ସୃଷ୍ଟି ଅମୃତମୟ !' ଏବଂ 'କଳା ଓ କଳଙ୍କ' ।

ସେତେବେଳେ ୱାନ୍ ସେଟ୍ ଡ୍ରାମାର ସେତେଟା ପ୍ରଚଳନ ନ ଥିଲା । ଗତାନୁଗତିକ ଧାରାରେ ନାଟକମାନଙ୍କରେ ବିଭିନ୍ନ ଦୃଶ୍ୟ ରଙ୍ଗାୟିତ ପରଦା ମାଧ୍ୟମରେ ଦେଖାଇ ଦିଆଯାଉଥିଲା । ଦୃଶ୍ୟ ପରିବର୍ତ୍ତନ ସହ ପରଦାର ମଧ୍ୟ ପରିବର୍ତ୍ତନ ହେଉଥିଲା । ଚିତ୍ରିତ ପରଦାରେ ଗ୍ରାମ ପଥ, ଅଳିନ୍ଦ, ଉଦ୍ୟାନ, ଜଙ୍ଗଲ ପଥ, ବୈଠକଖାନା ଆଦି ଦେଖାଇ

ଦିଆଯାଉଥିଲା । କାର୍ତ୍ତିକ ଚନ୍ଦ୍ର ନାରୀ ମନସ୍ତତ୍ତ୍ୱକୁ ଆଧାର କରି ରଚନା କରିଥିବା 'ଏ ସୃଷ୍ଟି ଅମୃତମୟ !' ନାଟକଟିକୁ ପ୍ରଥମ ଥର ପାଇଁ ଗୋଟିଏ ସେଟିଙ୍ଗ୍ ମାଧ୍ୟମରେ ପରିବେଷଣ କରାଇଥିଲେ । କଥାବସ୍ତୁ, ସଂଳାପ, ନାଟ୍ୟଶୈଳୀ, ଚିନ୍ତା ଓ ପରିକଳ୍ପନା ତଥା ଉପସ୍ଥାପନା କ୍ଷେତ୍ରରେ ତାଙ୍କର ଏହି ନାଟକଟି ସେତେବେଳେ ନବନାଟ୍ୟ ଆନ୍ଦୋଳନର ଏକ ପ୍ରାରମ୍ଭିକ ଉଦ୍ୟମ ରୂପେ ପରିଗଣିତ ହୋଇଥିଲା । ଏଥିରେ ତାଙ୍କର ସହପାଠିନୀ ଜୟନ୍ତୀ ମିଶ୍ର ନାୟିକା ସାଜିଥିଲା ବେଳେ ହରିଶ୍ ମହାପାତ୍ର ନାୟକ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ହରିଶ ମହାପାତ୍ର ପରବର୍ତ୍ତୀ କାଳରେ ପ୍ରଥମ ଓଡ଼ିଆ ରଙ୍ଗିନ୍ ଚଳଚ୍ଚିତ୍ର 'ଗପ ହେଲେ ବି ସତ'ର ନାୟକ ହୋଇଥିଲେ ଏବଂ ପରେ ରାଜନୀତିରେ ଯୋଗ ଦେଇଥିଲେ । ଅକ୍ଷୟ କୁମାର ମହାନ୍ତି (କାଶ୍ୟପ) ଏଇ ନାଟକର ପ୍ରସ୍ତୁତି ଓ ପ୍ରଯୋଜନାରେ ବିଶେଷ ସହାୟତା କରିଥିଲେ ।

ସେହିପରି 'କଳା ଓ କଳଙ୍କ' ନାଟକଟିରେ ସେ ଅନ୍ୟ ଏକ ନୂତନ ପରୀକ୍ଷା ଓ ପ୍ରୟୋଗ କରିଥିଲେ । ଏଥିରେ ଅର୍ଦ୍ଧଶତାଧିକ କଳାକାର ବିଭିନ୍ନ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ଏହାର କଥାବସ୍ତୁ ଥିଲା ଅତ୍ୟନ୍ତ ମାର୍ମିକ ଓ ମନୋଜ୍ଞ । ଏକ ଚରିତ୍ରଧର୍ମୀ ସାମାଜିକ ନାଟକରେ ପୌରାଣିକ ଦୃଶ୍ୟର ଅବତାରଣା ଦର୍ଶକଙ୍କୁ ନୂତନ ନାଟକୀୟ ସ୍ୱାଦ ପ୍ରଦାନ କରିପାରିଥିଲା । ନାଟକର ନିର୍ଦ୍ଦେଶନା ନାଟ୍ୟକାର ନିଜେ ଦେଇଥିଲେ । ଏହି ଅବସରରେ ତାଙ୍କ ରଚିତ 'ମୌସୁମୀ' ଶୀର୍ଷକ ଏକ ଦୀର୍ଘ ସଂଗୀତ-ରୂପକ ବାଦଲ୍ ଦାସ, ପୂର୍ଣ୍ଣ ଖୁଣ୍ଟିଆ ତଥା ଅନୁପ ପାତ୍ରଙ୍କ ସୁମଧୁର ସ୍ୱର-ସଂଯୋଜନାରେ ପ୍ରାୟ ୫୦ ଜଣ କଣ୍ଠଶିଳ୍ପୀଙ୍କୁ ନେଇ ପରିବେଷିତ ହୋଇଥିଲା ।

୧୯୬୩ ମସିହାରେ ପ୍ରଥମ ଦୁଇଟି ନାଟକ ରାଜ୍ୟସ୍ତରୀୟ ନାଟକ ପ୍ରତିଯୋଗିତାରେ ଶ୍ରେଷ୍ଠ ନାଟକରୂପେ ପୁରସ୍କୃତ ହେବାର ଠିକ୍ ୮ ବର୍ଷ ପରେ ୧୯୭୧ ମସିହାରେ ନାଟକ 'ଜୀବନ-ଯଜ୍ଞ' ସର୍ବଭାରତୀୟ ସ୍ତରରେ ତାଙ୍କ ସାଧନା ଓ ସିଦ୍ଧିର ପ୍ରଥମ ସଫଳତା ଆଣି ପାରିଥିଲା । ୧୯୭୧ ମସିହା ଫେବୃୟାରୀ ମାସରେ ଆହ୍ଲାବାଦ୍‌ଠାରେ ଅନୁଷ୍ଠିତ ଚତୁର୍ଥ ନିଖିଳ ଭାରତ ନାଟକ ପ୍ରତିଯୋଗିତାରେ କଳାତୀର୍ଥ ନାଟ୍ୟଗୋଷ୍ଠୀର ଏକ ଦଶଜଣିଆ ନାଟ୍ୟ ପ୍ରତିନିଧି ଦଳ କାର୍ତ୍ତିକ ରଥଙ୍କ ନେତୃତ୍ୱରେ ଯୋଗ ଦେଇ ୧୪ଟି ଭାଷାରେ ପରିବେଷିତ ୬୫ଟି ନାଟକ ମଧ୍ୟରେ ଶ୍ରେଷ୍ଠ ବିବେଚିତ ହୋଇ ଏକ ମର୍ଯ୍ୟାଦାପୂର୍ଣ୍ଣ ଟ୍ରଫି ଲାଭ କରିଥିଲା । ଜାତୀୟସ୍ତରରେ ଓଡ଼ିଆ ନାଟକ, ନାଟ୍ୟକଳା ଓ ରଙ୍ଗମଞ୍ଚ ପାଇଁ ଗର୍ବ ଓ ଗୌରବ ଆଣିବାରେ କାର୍ତ୍ତିକ ଚନ୍ଦ୍ରଙ୍କ ଏହା ପ୍ରଥମ ଉପଲବ୍ଧି ।

ନାଟ୍ୟକାର ନିଜେ ଅଭିନୟ କରିଥିବା ଶେଷ ନାଟକ ଥିଲା କଟକ କଳା ବିକାଶ କେନ୍ଦ୍ର ରଙ୍ଗମଞ୍ଚରେ ପରିବେଷିତ 'ଜଉଘର' । ନବନାଟ୍ୟ ଆନ୍ଦୋଳନ କାଳରେ 'ଜୀବନ-ଯଜ୍ଞ' ପରେ ପରେ କାର୍ତ୍ତିକ ଚନ୍ଦ୍ର କ୍ରମାଗତ ଭାବେ 'ସ୍ୱର୍ଗଦ୍ୱାର', 'ସମୁଦ୍ରର ଫଂଗ ଯନ୍ତ୍ରଣା',

'ସ୍ମୃତି, ସାନ୍ତ୍ୱନା ଓ ଶୂନ୍ୟତା', 'ତୃତୀୟ ପୃଥିବୀ', 'ବହ୍ନିମାନ୍' ଆଦି ଅନେକ ନୂତନ ସ୍ୱାଦ ଓ ସ୍ୱରର ଉଚ୍ଚାଙ୍ଗ ନାଟକ ରଚନା କରି ମଞ୍ଚସ୍ଥ କରାଇଥିଲେ । ବିଦଗ୍ଧ ଦର୍ଶକଙ୍କ ଦ୍ୱାରା ସେଗୁଡ଼ିକ ବିଶେଷ ମାତ୍ରାରେ ଆଦୃତ ହୋଇଥିଲା । ୧୯୭୩ ମସିହାରେ ଅଭିନୀତ 'ସମୁଦ୍ରର ସଂଗ ଯନ୍ତ୍ରଣା' ନାଟକରେ ସଙ୍ଗୀତ ପରିଚାଳନା କରିଥିଲେ ପ୍ରଖ୍ୟାତ କଣ୍ଠଶିଳ୍ପୀ ଓ ସଙ୍ଗୀତକାର ଅକ୍ଷୟ କୁମାର ମହାନ୍ତି (ଖୋକାଭାଇ) ଏବଂ ନେପଥ୍ୟରେ କଣ୍ଠଦାନ କରିଥିଲେ ହବିବ୍ । ଅନ୍ୟ କେତେକ ସଫଳ ନାଟକରେ ରୁଚିବନ୍ତ ସଙ୍ଗୀତ ନିର୍ଦ୍ଦେଶନା ଦେଇଥିଲେ ଜି. ନାରାୟଣ ରାଓ ତଥା ବାସୁଦେବ ରଥ । ନିଜ ନାଟକର ମଞ୍ଚ-ସଫଳତାର ଶ୍ରେୟ ସେ ସବୁବେଳେ ଏଥିରେ ଅଭିନୟ କରି ଆସିଥିବା ପ୍ରତିଭାସଂପନ୍ନ ଶିଳ୍ପୀ ବନ୍ଧୁମାନଙ୍କୁ ଦେଇ ଆସୁଥିଲେ । ଅନ୍ତରଙ୍ଗ ବନ୍ଧୁ କଲ୍ୟାଣ କୁମାର ଘୋଷ, ଦୀନେଶ ଚନ୍ଦ୍ର ରାଉତ, ଦୀପେନ୍ କୁମାର ଘୋଷ, ତପନ କୁମାର ମୁଖାର୍ଜୀ, ବିଜୟ କୁମାର ମହାନ୍ତି (ବାରିପଦା) ତାଙ୍କ ନାଟକ ତଥା ନାଟ୍ୟ ସଂଗଠନରେ ସବୁବେଳେ ମୁଖ୍ୟ ଭୂମିକା ନିର୍ବାହ କରୁଥିଲେ । ବିରଳ କୁମାର ଚାନ୍ଦ, ଶ୍ୟାମଲ୍ କୁମାର ସେନ୍, ଶେଖର କୁମାର ଦତ୍ତ, ସମୀର କୁମାର ଦତ୍ତ, ଶ୍ରୀକାନ୍ତ ଚୌଧୁରୀ, ସଚ୍ଚିଦାନନ୍ଦ ମହାନ୍ତି, ବିମ୍ବାଧର ଦେହୁରୀ, ବିଜୟ କୁମାର ରାୟ, ତାପସ କୁମାର ଦାସଗୁପ୍ତ, କୌଶିକ କୁମାର ଘୋଷ, ନାରାୟଣ ସିଂହ, ନାରାୟଣ ପତି, ରବୀନ୍ଦ୍ର ନାଥ ମିଶ୍ର, ଶ୍ରୀମନ୍ତ ଚୌଧୁରୀ, ଭାଗୀରଥି ପତି, ଜନାର୍ଦ୍ଦନ ପତି, ଡ଼ାକ୍ତର ପ୍ରମୋଦ ରଞ୍ଜନ ମହାନ୍ତି, ଅଧ୍ୟାପକ ପ୍ରତାପ ଚନ୍ଦ୍ର ମହାନ୍ତି, ଅଧ୍ୟାପକ ପ୍ରସନ୍ନ କୁମାର ପତି, ସୂର୍ଯ୍ୟମଣି ତ୍ରିପାଠୀ, ବଙ୍କିମ ମହାନ୍ତି, ରାଇ ଚରଣ ଦାସ, ଦେବେନ୍ଦ୍ର କୁମାର ଦାସ, ରାଧାମୋହନ ସାହୁ, ସୁବ୍ରତ କୁମାର ମୁଖାର୍ଜୀ, ଅର୍ଚ୍ଚନା ମଲ୍ଲିକ୍, ସଂଚିତା ସିଂହ, ଶାନ୍ତିଲତା ବଳ, ଜୟନ୍ତୀ ବଳ, ନିରୂପମା ମହାରଣା, ଦୀପା କରଚୌଧୁରୀ, ନମ୍ରତା ଦାସ ପ୍ରମୁଖ ନାଟକର ପ୍ରଯୋଜନାରେ ସକ୍ରିୟ ରୂପେ ଭାଗ ନେଇ ପ୍ରଭାବଶାଳୀ ଅଭିନୟ ଦ୍ୱାରା ନାଟ୍ୟକାରଙ୍କୁ ସଫଳତାର ଶୀର୍ଷରେ ପହୁଁଚାଇବାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ଏ କ୍ଷେତ୍ରରେ କାର୍ତ୍ତିକ ଚନ୍ଦ୍ରଙ୍କୁ ବିଭିନ୍ନ ଅବସରରେ ସୁଚିନ୍ତିତ ମାର୍ଗଦର୍ଶନ କରାଇଥିଲେ କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ, ବୃନ୍ଦାବନ ଚନ୍ଦ୍ର ରଥ, ସୁରେନ୍ଦ୍ର ନାଥ ମହାନ୍ତି, ନଦିୟା ବିହାରୀ ମହାନ୍ତି, ହେମନ୍ତ କୁମାର ଦାସ, ବ୍ରଜ ମହାନ୍ତି, ଦାଶରଥୀ ପ୍ରସାଦ ଦାସ, ଆଡ୍‌ଭୋକେଟ୍ ରମାକାନ୍ତ ମହାପାତ୍ର, ରଣଧୀର ଦାସ, ପୁରଞ୍ଜନ ରାୟ, ଅଧ୍ୟାପିକା ଅଳକା ରାୟ, ଧନେଶ୍ୱର ରାଉତ ପ୍ରମୁଖ ।

ପୂର୍ବରୁ ମୀନାବଜାର ଓ ମୀନାମଣ୍ଡଳୀ ଜରିଆରେ ପ୍ରଜାତନ୍ତ୍ର ପ୍ରଚାର ସମିତି ଓ ଡକ୍ଟର ହରେକୃଷ୍ଣ ମହତାବଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିଲେ ନାଟ୍ୟକାର ଶ୍ରୀ ରଥ । ରେଭେନ୍ସା କଲେଜରେ ବି.ଏ. ପଢ଼ିଲା ବେଳେ ସେ ଦୈନିକ ଓଡ଼ିଆ ସମ୍ବାଦପତ୍ର 'ପ୍ରଜାତନ୍ତ୍ର'ରେ ଜଣେ ସାମୟିକ ସମାଚାର ପ୍ରତିନିଧି ଭାବେ ଯୋଗ ଦେଇ ମାସିକ ୫୦ଟଙ୍କା ପାରିଶ୍ରମିକ ପାଉଥିଲେ । ମୁଖ୍ୟତଃ ସେ କ୍ରୀଡ଼ା, ଶିକ୍ଷା, କଳା-ସଂସ୍କୃତି ସମ୍ବନ୍ଧୀୟ ସମ୍ବାଦ

ସଂଗ୍ରହ କରୁଥିଲେ । ସେତେବେଳେ 'ପ୍ରଜାତନ୍ତ୍ର'ର ସଂପାଦକ ଥିଲେ ବରେଣ୍ୟ ସାମ୍ବାଦିକ ଶ୍ରୀହର୍ଷ ମିଶ୍ର । ପୂର୍ବରୁ କଳା-ସଂସ୍କୃତି କ୍ଷେତ୍ରରେ ତାଙ୍କର ପ୍ରବେଶ ଥିବାରୁ ଏହା ତାଙ୍କୁ ସାମ୍ବାଦିକତା କ୍ଷେତ୍ରରେ ବେଶ୍ ସାହାଯ୍ୟ କରିଥିଲା । ପରେ ସଂପାଦକ ବିଚିତ୍ରାନନ୍ଦ କରଙ୍କ ଆଗ୍ରହ ହେତୁ ଦୈନିକ ଓଡ଼ିଆ ସମ୍ବାଦପତ୍ର 'ମାତୃଭୂମି'ର ସଂପାଦକୀୟ ବିଭାଗରେ ଯୋଗ ଦେଇ ସାମୟିକ ଭାବେ ସହ ସଂପାଦକ ହୋଇଥିଲେ ଏବଂ କଳା-ସଂସ୍କୃତି ବିଷୟରେ ସମ୍ବାଦ ଲେଖି ମାସିକ ଶହେ ଟଙ୍କା ପାରିଶ୍ରମିକ ପାଇଲେ । ସେହି ସମୟରେ ମାସିକ ସାହିତ୍ୟ-ପତ୍ରିକା 'ସହକାର' ପୃଷ୍ଠାରେ ଓଡ଼ିଶାରେ ନାଟକ ଓ ରଙ୍ଗମଞ୍ଚର ବିକାଶଧାରା ସଂପର୍କରେ ଧାରାବାହିକ ଭାବେ ତାଙ୍କର ସଚିତ୍ର ଲେଖାମାନ ପ୍ରକାଶ ପାଉଥିଲା ।

୧୯୭୨ ମସିହା ଫେବୃଆରୀ ୪ ତାରିଖରେ ଯୁବ ନାଟ୍ୟକାର କାର୍ତ୍ତିକ ଚନ୍ଦ୍ରଙ୍କ ବୈବାହିକ ଜୀବନ ଆରମ୍ଭ ହେଲା । ଭଞ୍ଜନଗରର ପ୍ରଭାସ ଚନ୍ଦ୍ର ମିଶ୍ରଙ୍କ ଏକମାତ୍ର କନ୍ୟା ପୁଷ୍ପାଞ୍ଜଳି ହେଲେ ନାଟ୍ୟକାରଙ୍କ ସହଧର୍ମିଣୀ । ଅଜା ବ୍ରହ୍ମପୁରର ବିଶିଷ୍ଟ ସଂସ୍କୃତବିତ୍ ପଣ୍ଡିତ ଜଗନ୍ନାଥ ରଥଶର୍ମା କନ୍ୟାଦାନ କରିଥିଲେ । ଏଣିକି ନାଟୁଆ ଜୀବନ ସହ ଯୋଡ଼ା ହେଲା ଆଉ ଏକ ଜୀବନ ।

ରେଭେନ୍ସା କଲେଜରୁ ଅର୍ଥନୀତିରେ ଏମ୍.ଏ. ପାସ୍ କଲା ପରେଁ ନାଟ୍ୟକାର କାର୍ତ୍ତିକ ଚନ୍ଦ୍ର ୧୯୭୨ ମସିହା ଅକ୍ଟୋବର ୩ ତାରିଖରେ ଯାଜପୁରସ୍ଥିତ ନରସିଂହ ଚୌଧୁରୀ ମହାବିଦ୍ୟାଳୟରେ ଜଣେ ଅଧ୍ୟାପକ ରୂପେ ଯୋଗ ଦେଲେ । ଏହି ସମୟରେ ସେ କେତୋଟି ଉଚ୍ଚାଙ୍ଗ ଏକାଙ୍କିକା ଓ ଛୋଟ ନାଟକ, ଯଥା - 'ଚାରିକାନ୍ଥର ନାଟକ', 'ଅସ୍ତସୂର୍ଯ୍ୟର ଶ୍ମଶାନ', 'ସୀମିତ ସଂପର୍କ', 'ଭଗ୍ନାଂଶ' ଆଦି ରଚନା କରିଥିଲେ । ତନ୍ମଧ୍ୟରୁ 'ଅସ୍ତସୂର୍ଯ୍ୟର ଶ୍ମଶାନ' ଛୋଟ ନାଟକଟି ଆକାଶବାଣୀ, କଟକ କେନ୍ଦ୍ରରୁ ପରିବାର ନିୟୋଜନ କାର୍ଯ୍ୟକ୍ରମ ଉପଲକ୍ଷେ ସର୍ବଭାରତୀୟ ସ୍ତରରେ ଆୟୋଜିତ ନାଟକ ପ୍ରତିଯୋଗିତାରେ ସର୍ବଶ୍ରେଷ୍ଠ ବିବେଚିତ ହୋଇ ପୁରସ୍କୃତ ତଥା ପ୍ରଚାରିତ ହୋଇଥିଲା । ପରବର୍ତ୍ତୀ ସମୟରେ ଏହାର ରୂପାନ୍ତର କଟକରେ ନୂଆ କରି ସ୍ଥାପିତ ହୋଇଥିବା ଦୂରଦର୍ଶନ କେନ୍ଦ୍ରରୁ ପ୍ରସାରିତ ହୋଇ ଉଚ୍ଚ ପ୍ରଶଂସା ଲାଭ କରିଥିଲା । ସେହିପରି 'ସୀମିତ ସଂପର୍କ' ଏକାଙ୍କିକାଟି ଆକାଶବାଣୀର ବିବିଧ ଭାରତୀ କେନ୍ଦ୍ରରୁ ପ୍ରଚାରିତ ହୋଇଥିବା ବେଳେ 'ଭଗ୍ନାଂଶ' ନାଟିକାଟି ଯୁବଜଗତ କାର୍ଯ୍ୟକ୍ରମରେ ପ୍ରଚାରିତ ହୋଇଥିଲା । ପରେ 'ସୀମିତ ସଂପର୍କ' ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ବି.ଏ. ଶ୍ରେଣୀର ଛାତ୍ରଛାତ୍ରୀଙ୍କ ପାଇଁ ଉଦ୍ଦିଷ୍ଟ ଓଡ଼ିଆ ଭାଷା ପାଠ୍ୟକ୍ରମର ଏକାଙ୍କିକା ସଂକଳନରେ ସ୍ଥାନିତ ହୋଇଥିଲା । ପରବର୍ତ୍ତୀ କାଳରେ ଫ୍ରେଣ୍ଡସ୍ ପବ୍ଲିଶର୍ସ ଦ୍ୱାରା ପ୍ରକାଶିତ 'ସମୁଦ୍ରର ରଙ୍ଗ ଯନ୍ତ୍ରଣା' ନାଟକଟି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ଭାଷା-ସାହିତ୍ୟ ବିଭାଗର ଇଚ୍ଛାଧୀନ ପାଠ୍ୟ ପୁସ୍ତକ ରୂପେ ମାନ୍ୟତା ପାଇଥିଲା ।

ସେହି ସମୟରେ ସେ ରଚନା କରିଥିବା 'ଦ୍ୱିତୀୟ ଦ୍ରୌପଦୀ', ତୃତୀୟ ପୃଥିବୀ ଇତ୍ୟାଦି ନାଟକ ଉଚ୍ଚ ପ୍ରଶଂସିତ ହୋଇଥିଲା ।

କାର୍ତ୍ତିକ ଚନ୍ଦ୍ର ଛାତ୍ର ଜୀବନରୁ ଗୀତି-କବିତା ରଚନା କରିବାରେ ଥିଲେ ବ୍ରତୀ । ଏନ୍.ସି. କଲେଜର କେତେ ଜଣ ସଂସ୍କୃତିମନା ଅଧ୍ୟାପକ ମିଳିତ ହୋଇ ପ୍ରତିମାସରେ ସଙ୍ଗୀତ ଆସରର ଆୟୋଜନ କରୁଥିଲେ । ଅନେକ ସମୟରେ କାର୍ତ୍ତିକ ଚନ୍ଦ୍ରଙ୍କ ରଚିତ ଆଧୁନିକ ଗୀତଗୁଡ଼ିକୁ ରାଧାରମଣ ଦାସ ସୁନ୍ଦର ଭାବେ ସ୍ୱର-ସଂଯୋଜନା କରିବା ସହ ନିଜେ କଣ୍ଠଦାନ କରି ସଂଗୀତ ଆସରକୁ ମନୋଜ୍ଞ କରି ତୋଳୁଥିଲେ । ସପ୍ତାହ ଶେଷରେ ସେ କଟକ ଆସି ପରିବାରକୁ ଭେଟିବା ସହ ନିଜ ନାଟ୍ୟକର୍ମକୁ ଆଦରି ନେଉଥିଲେ । ଯାଜପୁରରେ ଥିଲା ବେଳେ କଲିକତାରୁ ପ୍ରକାଶିତ 'ଆସନ୍ତାକାଲି', 'ନବରବି', କଟକରୁ ପ୍ରକାଶିତ 'ଝଙ୍କାର' ଓ 'ଜୀବନରଙ୍ଗ', ଭୁବନେଶ୍ୱରରୁ ପ୍ରକାଶିତ 'ସମାବେଶ' ଆଦି ମାସିକ ପତ୍ରିକାରେ କ୍ରମାଗତ ଭାବେ ତାଙ୍କ ଲିଖିତ ଏକାଙ୍କିକା ଓ ନାଟକ ସମ୍ବନ୍ଧୀୟ ଆଲୋଚନାମାନ ପ୍ରକାଶ ପାଉଥିଲା ।

ଯାଜପୁର ଏନ୍.ସି. କଲେଜରେ ଅଧ୍ୟାପକ ଥିବା ବେଳେ ସାମୁଏଲ୍ ସାହୁ (ବାବି)ଙ୍କ ଦିଗ୍‌ଦର୍ଶନରେ ତାଙ୍କ ରଚିତ 'ଆଜିର ରାଜା' ନାଟକଟି ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ର ବ୍ୟବସାୟିକ ରଙ୍ଗମଞ୍ଚରେ ଅଭିନୀତ ହୋଇ ୧୦୦ରୁ ଊର୍ଦ୍ଧ୍ୱ ଦିନ ଧରି ବେଶ୍ ସଫଳତାର ସହ ଚାଲିଥିଲା । ଏହି ନାଟକ ପ୍ରଦର୍ଶନକୁ ଉଦ୍‌ଘାଟନ କରିଥିଲେ ତାଙ୍କର ପିଉସା ତତ୍କାଳୀନ ରାଜ୍ୟ ଶିକ୍ଷା ଓ ସଂସ୍କୃତି ବିଭାଗ ମନ୍ତ୍ରୀ ବିନାୟକ ଆଚାର୍ଯ୍ୟ । ନାଟକ ପ୍ରଦର୍ଶନ ପାଇଁ ନାଟ୍ୟକାରଙ୍କୁ ପ୍ରତି ରାତିକୁ ରୟାଲିଟି ବାବଦରେ ୧୦ ଟଙ୍କା ଲେଖାଏଁ ମିଳୁଥିଲା । ପ୍ରିୟନାଥ ମିଶ୍ର (ପୀର)ଙ୍କ ନିର୍ଦ୍ଦେଶନାରେ ସାମାଜିକ ନାଟକଟି ଅନେକ ପ୍ରଶଂସା ଗୋଟାଇଥିଲା ।

୧୯୭୬ ମସିହା ଜୁଲାଇ ମାସରେ ନାଟ୍ୟକାର ରଥ ସାଲେପୁର କଲେଜ ଅର୍ଥନୀତି ବିଭାଗରେ ଯୋଗ ଦେଲେ । ସେଠାରେ ଅଧ୍ୟାପକମାନଙ୍କ ଏକାନ୍ତ ଆଗ୍ରହ କ୍ରମେ ସେ ରଚନା କରିଥିଲେ - 'ଅନ୍ୟ ଆକାଶ' ଓ 'ଚନ୍ଦ୍ରବିନ୍ଦୁ' । ଏହି ନାଟକ ଦୁଇଟି ଅଧ୍ୟାପକମାନଙ୍କ ଦ୍ୱାରା ୧୯୭୭ ଓ ୭୮ରେ କଲେଜ ପରିସରରେ ମଞ୍ଚସ୍ଥ ହୋଇଥିଲା । ଏହି ନାଟକ ଦୁଇଟିର ନିର୍ଦ୍ଦେଶନା ଦେଇଥିଲେ ଅଧ୍ୟାପକ ଡକ୍ଟର ରବି ନାୟକ ।

୧୯୭୮ ମସିହା ବେଳକୁ ଶିକ୍ଷାବିତ୍ ଗଜେନ୍ଦ୍ର ଆଚାର୍ଯ୍ୟ ସାଲେପୁର କଲେଜର ଅଧ୍ୟକ୍ଷ ଥିଲେ । ଦିନେ ସେ କାର୍ତ୍ତିକ ଚନ୍ଦ୍ରଙ୍କୁ ଡାକି କହିଲେ– "କଲେଜର ନାଟ୍ୟପ୍ରତିଭାପନ୍ନ ଅଧ୍ୟାପକମାନଙ୍କୁ ନେଇ ନାଟକଟିଏ ପ୍ରସ୍ତୁତ କରି ଏକ ସର୍ବଭାରତୀୟ ନାଟକ ପ୍ରତିଯୋଗିତାରେ ଭାଗ ନେଲେ କିପରି ହୁଅନ୍ତା !" ଅଧ୍ୟାପକ ପ୍ରସନ୍ନ କୁମାର ପତି, ଛାତ୍ରୀ

ସ୍ନେହଲତା ଦାସଙ୍କ ସହ ଅନ୍ୟ ଅଧ୍ୟାପକ-ଅଭିନେତା ତଥା କଟକର ଡାକ୍ତର ବନ୍ଧୁ ପ୍ରମୋଦ ରଞ୍ଜନ ମହାନ୍ତିଙ୍କୁ ନେଇ ମଧ୍ୟପ୍ରଦେଶର ଜବଲପୁରଠାରେ ଅନୁଷ୍ଠିତ ସର୍ବଭାରତୀୟ ନାଟକ ପ୍ରତିଯୋଗିତାରେ ତାଙ୍କ ରଚିତ ଓ ନିର୍ଦ୍ଦେଶିତ 'ଈଶ୍ୱର ଜଣେ ଯୁବକ' ମଞ୍ଚସ୍ଥ କରାଇଲେ ନାଟ୍ୟକାର । ଏହି ନାଟକଟି ସେଠାରେ ସର୍ବଶ୍ରେଷ୍ଠ ନାଟକରୂପେ ବିବେଚିତ ହେଲା ।

୧୯୭୮ ମସିହାରେ ରାଉରକେଲାରେ ଅନୁଷ୍ଠିତ ତୃତୀୟ ଲୋକନାଟକ ମହୋତ୍ସବର ରାଜ୍ୟସ୍ତରୀୟ ନାଟକ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରି ତାଙ୍କ ରଚିତ ନାଟକ 'ମାଂସର ଫୁଲ' ଶ୍ରେଷ୍ଠ ରଚନା, ଶ୍ରେଷ୍ଠ ନିର୍ଦ୍ଦେଶନା, ଶ୍ରେଷ୍ଠ ପ୍ରଯୋଜନା, ଶ୍ରେଷ୍ଠ ଅଭିନେତା, ଶ୍ରେଷ୍ଠ ସହଅଭିନେତ୍ରୀ ପରି ପାଞ୍ଚ ପାଞ୍ଚଟି ପୁରସ୍କାର ଲାଭ କରି କୀର୍ତ୍ତିମାନ ସ୍ଥାପନ କରିଥିଲା । ଏହା ପୂର୍ବରୁ ତାଙ୍କର ସଦ୍ୟ ରଚିତ ଏହି ପ୍ରଗତିଧର୍ମୀ ନାଟକଟି ଆନ୍ତର୍ଜାତିକ ବିଶ୍ୱ ଯୁବ ଉତ୍ସବ ଅବସରରେ କଟକ କଳା ବିକାଶ କେନ୍ଦ୍ର ପ୍ରେକ୍ଷାଳୟରେ ଅଭିନୀତ ହୋଇଥିଲା ।

ଏହି ସମୟରେ ନାଟ୍ୟକାର ରଥଙ୍କ ଦେଶାତ୍ମବୋଧକ ନାଟକ 'ଶହୀଦ୍ ଭଗତ୍ ସିଂହ' କଟକ କଳା ବିକାଶ କେନ୍ଦ୍ରରେ ଶହୀଦ୍ ଭଗତ୍ ସିଂହ ସ୍ମୃତି କମିଟି ଦ୍ୱାରା ତାଙ୍କରି ନିର୍ଦ୍ଦେଶନାରେ ଅଭିନୀତ ହୋଇଥିଲା । ଏଥିରେ ଅର୍ଦ୍ଧ ଶତାଧିକ କଳାକାର ଅଂଶ ଗ୍ରହଣ କରିଥିଲେ । ଭଗତ୍ ସିଂହ ଚରିତ୍ରରେ ତାଙ୍କ ଛାତ୍ର ସୁବ୍ରତ ଦାଶଙ୍କ ଶକ୍ତିଶାଳୀ ଅଭିନୟ ଦର୍ଶକଙ୍କୁ ଦେଶପ୍ରେମରେ ଉଦ୍‌ବୁଦ୍ଧ କରି ପାରିଥିଲା । ଏହାର ପରବର୍ତ୍ତୀ ବର୍ଷମାନଙ୍କରେ 'ଚିରନ୍ତନ ବର୍ତ୍ତମାନ', 'ଚଇତି ଘୋଡ଼ା', 'ରକ୍ତର ପାହାଡ଼', 'ଶୁକ ଶାରୀ କଥା', 'ଜଙ୍ଗଲୀ ସହର' (ଅନାଦି ସାହୁଙ୍କ ଲୋକପ୍ରିୟ ଉପନ୍ୟାସର ନାଟ୍ୟ ରୂପାନ୍ତର), 'ପ୍ରଜାପତି', 'ରକ୍ତର ଫୁଲ', 'ଶୃଙ୍ଖଳା ମାଟିର ଲୁହ', 'ପାଦ ତଳର ଆକାଶ' ଆଦି ସଫଳତା ସହକାରେ ମଞ୍ଚସ୍ଥ ହୋଇଥିଲା । ମିହିର କୁମାର ଦାସ, ହର ପ୍ରସାଦ ପଟ୍ଟନାୟକ, ହରୀଶ ମହାନ୍ତି ତାଙ୍କର ବେଶ୍ କେତୋଟି ନାଟକରେ ମୁଖ୍ୟ ଭୂମିକାରେ ଅଭିନୟ କରି ଦର୍ଶକଙ୍କ ପ୍ରଶଂସାଭାଜନ ହୋଇ ପାରିଥିଲେ । ନାଟକରେ ଅଭିନୟ ହିଁ ମୂଳତତ୍ତ୍ୱ ବୋଲି ସେ ମନେ କରୁଥିବା ହେତୁ ନାଟ୍ୟ-ନିର୍ଦ୍ଦେଶନା ସମୟରେ ଅଭିନୟ କ୍ଷେତ୍ରରେ ନୂଆ ନୂଆ କୌଶଳ ଓ ଶୈଳୀର ପ୍ରୟୋଗ ଉପରେ ସେ ଅଧିକ ଗୁରୁତ୍ୱ ଆରୋପ କରୁଥିଲେ । ତେଣୁ ଅଭିନୟକୁ ଅଧିକ ମହତ୍ତ୍ୱ ଦେଇ ନାଟ୍ୟ-ପ୍ରଯୋଜନାକୁ ସଳ୍ପ-ବ୍ୟୟ ସାପେକ୍ଷ କରିବାକୁ ସେ ସବୁବେଳେ ତତ୍ପର ଥିଲେ ।

୧୯୮୯ ମସିହାରେ କଟକ ନଗରର ସହସ୍ର ବାର୍ଷିକ ପାଳନ ଅବସରରେ ସହସ୍ର ବାର୍ଷିକ କମିଟି ଆନୁକୂଲ୍ୟରେ ତାଙ୍କ ରଚିତ ମହାନାଟକ 'କଟକ ନଗର ବରଷ ହଜାର' ବାରବାଟୀ ଷ୍ଟାଡ଼ିୟମର ପଞ୍ଚମୁଖୀ ମୁକ୍ତାକାଶ ରଙ୍ଗମଞ୍ଚରେ ୩୫ ହଜାର ଦର୍ଶକଙ୍କ ଗହଣରେ ପରିବେଷଣ କରାଯାଇଥିଲା । ଓଡ଼ିଆ ଜାତିର ଗୌରବମୟ ଇତିହାସ ସମ୍ବଳିତ

ଦେଶାତ୍ମବୋଧକ ଏହି ମହାନାଟକ ଭାରତୀୟ ନାଟ୍ୟ-ଜଗତରେ ପ୍ରଥମ ଥର ପାଇଁ ତିନି ଶହରୁ ଊର୍ଦ୍ଧ୍ୱ ଚରିତ୍ରର ସମାବେଶରେ ଅଭିନୀତ ହୋଇଥିଲା । ନୃପ କେଶରୀଙ୍କଠାରୁ ଆରମ୍ଭ କରି ବାଇମୁଣ୍ଡି, ପୁଣି ପ୍ରତାପରୁଦ୍ର ଦେବ, ଶ୍ରୀଚୈତନ୍ୟ, ମୁକୁନ୍ଦଦେବ, କଳାପାହାଡ଼, ମୁସଲମାନ ଶାସନ, ବର୍ଗୀ ଆକ୍ରମଣ, ମରାଠା ଶାସନ, ଇଂରେଜମାନଙ୍କର କଟକ ଆକ୍ରମଣ, ନଅଙ୍କ ଦୁର୍ଭିକ୍ଷ, ଗଡ଼ଜାତ ମିଶ୍ରଣ, ଭାରତର ସ୍ୱାଧୀନତା ସଂଗ୍ରାମରେ ସହରର ଭୂମିକା ପର୍ଯ୍ୟନ୍ତ କଟକର ଇତିହାସ ତଥା ଓଡ଼ିଆ ଜାତିର ଉତ୍‌ଥାନ-ପତନର ଗାଥା ଏହି ମହାନାଟକର ବିଷୟବସ୍ତୁ ଥିଲା । ଦୀର୍ଘ ୪ ଘଣ୍ଟାର ଏହି ମହାନାଟକରେ ୩୦୦ରୁ ଊର୍ଦ୍ଧ୍ୱ କଳାକାର ଅତି ଶୃଙ୍ଖଳିତ ଭାବେ ଅଂଶଗ୍ରହଣ ପୂର୍ବକ ଉଚ୍ଚକୋଟିର ଅଭିନୟ ପ୍ରଦର୍ଶନ କରି ବେଶ୍ ପ୍ରଶଂସିତ ହୋଇଥିଲେ । ଏଥିପାଇଁ ସାଲେପୁର କଲେଜରେ ଅଧ୍ୟାପନା ସାରି କଟକ ଫେରିବା ପରେ ନାଟ୍ୟକାର କାର୍ତ୍ତିକ ଚନ୍ଦ୍ରଙ୍କୁ ପ୍ରତ୍ୟହ ସନ୍ଧ୍ୟାରେ କ୍ରମାଗତ ଭାବେ ଦୀର୍ଘ ତିନି ମାସ ଧରି ସୁସମନ୍ୱିତ ଢଙ୍ଗରେ କଠୋର ନାଟ୍ୟାଭ୍ୟାସ କରିବାକୁ ପଡ଼ିଥିଲା । ଭାରତର ତତ୍କାଳୀନ ରାଷ୍ଟ୍ରପତି ଆର୍. ଭେଙ୍କଟରମଣଙ୍କ ଦ୍ୱାରା ୧୯୮୯ ମସିହା ଡିସେମ୍ବର ୧୦ ତାରିଖରେ ଏହାର ମଞ୍ଚାୟନ ଉଦ୍‌ଘାଟିତ ହୋଇଥିଲା । ଏ ଭଳି ଏକ ମହାନ୍ ଐତିହାସିକ ନାଟକ ରଚନା କରି ଏତେ ସଂଖ୍ୟକ କଳାକାରଙ୍କୁ ନିର୍ଦ୍ଦେଶନା ଦେଇ ତାହାକୁ ଯଥାର୍ଥ ଭାବେ ସଫଳତା ସହକାରେ ମଞ୍ଚସ୍ଥ କରିବା ଥିଲା ଏକ ମସ୍ତବଡ଼ ଆହ୍ୱାନ । ଜଷ୍ଟିସ୍ ହରିହର ମହାପାତ୍ର, ଡ଼କ୍ଟର ସଦାଶିବ ମିଶ୍ର, ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ, ଶ୍ରୀମତୀ ପାର୍ବତୀ ଘୋଷ, ଐତିହାସିକ ପ୍ରଫେସର୍ ଜଗନ୍ନାଥ ପଟ୍ଟନାୟକଙ୍କ ସୁଚିନ୍ତିତ ପରାମର୍ଶ ଓ ପ୍ରୋତ୍ସାହନ ନାଟ୍ୟକାରଙ୍କୁ ଯଥେଷ୍ଟ ସାହସ ଯୋଗାଇଥିଲା । ମହାନାଟକର ମୁଖ୍ୟ ଭୂମିକାରେ ଅଭିନୟ କରିଥିଲେ ସ୍ୱନାମଧନ୍ୟ ଶିଳ୍ପୀ ଝରଣା ଦାସ, ବୈଷ୍ଣବ ଚରଣ ମହାପାତ୍ର, ଦୁଃଖିଶ୍ୟାମ ପାଣିଗ୍ରାହୀ, ଚକ୍ରଧର ଦାସ, ଗୋଲକ ବିହାରୀ ଦାସ ମହାପାତ୍ର, ପାର୍ଥବୀର ଭୂୟାଁ, ଅମରେନ୍ଦ୍ର ପଣ୍ଡା, ଭାନୁପ୍ରତାପ ରଣା, ଶ୍ରୀକାନ୍ତ କୁମାର ନାୟକ, ମାନସ ରଞ୍ଜନ ତ୍ରିପାଠୀ, ଦେବୀ ପ୍ରସାଦ ପଟ୍ଟନାୟକ, ପତିତପାବନ ସ୍ୱାଇଁ, ବିଷ୍ଣୁ ଚରଣ ବେହେରା, ରଶ୍ମିରଞ୍ଜନ ସ୍ୱାଇଁ, ସାତ୍ୟକୀ ମିଶ୍ର, ସଂଘମିତ୍ରା ଦାଶ, ଶର୍ମିଳୀ ମହାପାତ୍ର, ସସ୍ମିତା ସିଂହ, ବିଜୟଲକ୍ଷ୍ମୀ ସାହୁ, ସସ୍ମିତା ପ୍ରଧାନ, ଅନୁରାଧା ରଥ ପ୍ରମୁଖ ।

ଦୀର୍ଘ ୩୦ ବର୍ଷ ଧରି ଉତ୍ତର ପ୍ରଦେଶର ଆହ୍ଲାବାଦ୍, ବିହାରର ପାଟନା, ପଶ୍ଚିମବଙ୍ଗର କଲିକତା, ହିମାଚଳ ପ୍ରଦେଶର ସିମ୍‌ଲା ଆଦି ସ୍ଥାନରେ ଅନୁଷ୍ଠିତ ହେଉଥିବା ସର୍ବଭାରତୀୟ ନାଟକ ପ୍ରତିଯୋଗିତାମାନଙ୍କରେ ଯୋଗ ଦେଇ ନାଟ୍ୟକାର ରଥ ଆହରଣ କରିଥିବା ବ୍ୟାପକ ଅନୁଭୂତିକୁ ନେଇ ନାଟ୍ୟନଗରୀ କଟକରେ ତା'ଠାରୁ ବଡ଼ ଧରଣର ସର୍ବଭାରତୀୟ ନାଟକ, ନୃତ୍ୟ ଓ ସଙ୍ଗୀତ ପ୍ରତିଯୋଗିତା ସହ ଆନ୍ତର୍ଜାତିକ ନାଟକ ମହୋତ୍ସବ

ଅୟୋଜନ କରିବା ପାଇଁ ଉଦ୍ୟମ ଆରମ୍ଭ କରିଥିଲେ । ପରେ ପରେ ଉତ୍କଳ ଯୁବ ସାଂସ୍କୃତିକ ସଂଘ ଗଠନ କରି ନାଟ୍ୟ-ନଗରୀ କଟକଠାରେ ୧୯୯୩ ମସିହାରୁ ଏ ଯାବତ୍ ପୃଥିବୀର ସର୍ବବୃହତ୍ ସାଂସ୍କୃତିକ ଉତ୍ସବ 'ଇଣ୍ଡିଆ ଥିଏଟର୍ ଅଲମ୍ପିଆଡ୍'ର ସେ ଆୟୋଜନ କରିଆସୁଛନ୍ତି । ଦୀର୍ଘ ତିନି ସପ୍ତାହବ୍ୟାପୀ ଅନୁଷ୍ଠିତ ହେଉଥିବା ଏହି ବିଶାଳ ମହୋତ୍ସବରେ ପ୍ରତିବର୍ଷ ଭାରତର ବିଭିନ୍ନ ରାଜ୍ୟର ୩୫୦୦ କଳାକାର ଅଂଶ ଗ୍ରହଣ କରି ଶତାଧିକ ନାଟକର ସମାବେଶରେ ନିଖିଳ ଭାରତ ବହୁଭାଷୀ ନାଟକ ପ୍ରତିଯୋଗିତା', ଅର୍ଦ୍ଧ ସହସ୍ରାଧିକ ନୃତ୍ୟାଙ୍ଗନାଙ୍କ ନୃତ୍ୟ ପରିବେଷଣରେ 'ନିଖିଳ ଭାରତ ଶାସ୍ତ୍ରୀୟ ଓ ଲୋକନୃତ୍ୟ ପ୍ରତିଯୋଗିତା', ଦୁଇ ଶତରୁ ଊର୍ଦ୍ଧ୍ୱ କଣ୍ଠ ଓ ବାଦ୍ୟଯନ୍ତ୍ର ଶିଳ୍ପୀଙ୍କ ଅଂଶ ଗ୍ରହଣରେ 'ନିଖିଳ ଭାରତ କଣ୍ଠ ଓ ବାଦ୍ୟଯନ୍ତ୍ର ସଙ୍ଗୀତ ପ୍ରତିଯୋଗିତା' ଆୟୋଜିତ ହୋଇଆସୁଛି । ଏଥିସହ ଶତାଧିକ ବିଦେଶୀ କଳାକାରଙ୍କ ଯୋଗଦାନରେ ଦେଶର ଏକମାତ୍ର 'ଆନ୍ତର୍ଜାତିକ ନାଟକ ମହୋତ୍ସବ' ମଧ୍ୟ ଏଠାରେ କ୍ରମାଗତ ଭାବେ ଅନୁଷ୍ଠିତ ହେଉଛି । ଗତ ୨୩ ବର୍ଷ ମଧ୍ୟରେ ଏହି ଥିଏଟର୍ ଅଲମ୍ପିଆଡ୍‌ରେ ପ୍ରାୟ ୭୫,୦୦୦ କଳାକାର ଅଂଶଗ୍ରହଣ କରି ସାରିଲେଣି । ଏ ଯାବତ୍ ଏହି ମହୋତ୍ସବରେ ଭାରତ ସମେତ ଆଫଗାନିସ୍ତାନ, ଆର୍ଜେଣ୍ଟିନା, ଅଷ୍ଟ୍ରେଲିଆ, ବଙ୍ଗଳାଦେଶ, ବୁଲ୍‌ଗାରିଆ, କାନାଡ଼ା, ଚୀନ୍, କ୍ରୋଏସିଆ, ଡେନ୍‌ମାର୍କ, ଫିନ୍‌ଲାଣ୍ଡ, ଗ୍ରୀସ୍, ଇଣ୍ଡୋନେସିଆ, ଇରାନ୍, ଇଟାଲୀ, ଜାପାନ, କୋରିଆ, ମେକ୍ସିକୋ, ନେପାଳ, ନେଦରଲ୍ୟାଣ୍ଡ, ନରୱେ, ପାକିସ୍ତାନ, ପେରୁ, ପୋଲାଣ୍ଡ, ରୁଷିଆ, ସଉଦି ଆରବ, ସିଙ୍ଗାପୁର, ସ୍ପେନ୍, ଶ୍ରୀଲଙ୍କା, ଥାଇଲ୍ୟାଣ୍ଡ, ୟୁକ୍ରେନ୍, ବ୍ରିଟେନ୍, ଯୁକ୍ତରାଷ୍ଟ୍ର ଆମେରିକା, ଉଜ୍‌ବେକିସ୍ତାନ୍ ଆଦି ୩୪ଟି ଦେଶର କଳାକାରମାନେ ଯୋଗଦେଇ ବିଶ୍ୱ-ଦରବାରରେ ନାଟକ ଓ ରଙ୍ଗମଞ୍ଚ କ୍ଷେତ୍ରରେ କଟକ ତଥା ଓଡ଼ିଶାର ଏକ ସତନ୍ତ୍ର ପରିଚୟ ସୃଷ୍ଟି କରି ପାରିଛନ୍ତି ।

୧୯୯୩ ମସିହାରେ ଜଷ୍ଟିସ୍ ହରିହର ମହାପାତ୍ର ଏହି ମହୋତ୍ସବର ଅଧ୍ୟକ୍ଷ ଥିଲେ । ତାଙ୍କ ପରେ ଅଧ୍ୟକ୍ଷ ଥିଲେ ଜଷ୍ଟିସ୍ ଦେବେନ୍ଦ୍ର ମୋହନ ପଟ୍ଟନାୟକ । ସଂପ୍ରତି ବାରବାଟି-କଟକର ବିଧାୟକ ଶ୍ରୀ ଦେବାଶୀଷ ସାମନ୍ତରାୟ ଉତ୍ସବ କମିଟିର ଅଧ୍ୟକ୍ଷ, ଶ୍ରୀମତୀ ପ୍ରଭା ପଟ୍ଟନାୟକ ସଂଗଠନ କମିଟିର ଅଧ୍ୟକ୍ଷା ଏବଂ ଶ୍ରୀ ଆଶୀର୍ବାଦ ବେହେରା ଅଭ୍ୟର୍ଥନା କମିଟିର ଅଧ୍ୟକ୍ଷ ଅଛନ୍ତି । ଦିଲୀପ କୁମାର ପାଟୋଡ଼ିଆ ଉତ୍କଳ ଯୁବ ସାଂସ୍କୃତିକ ସଂଘର ସଭାପତିରୂପେ ଦାୟିତ୍ୱ ତୁଲାଇଲା ବେଳେ ନାଟ୍ୟକାର ଅଧ୍ୟାପକ କାର୍ତ୍ତିକ ଚନ୍ଦ୍ର ରଥ ସାଧାରଣ ସଂପାଦକ ଭାବେ କର୍ତ୍ତବ୍ୟ ସଂପାଦନ କରୁଛନ୍ତି । ଏ କ୍ଷେତ୍ରରେ କନ୍ୟା ଅନୁରୂପା ଓ ପୁତ୍ର ଶିବାଦିତ୍ୟ ସଂଗଠନ କାର୍ଯ୍ୟରେ ତାଙ୍କୁ ସବୁମନ୍ତେ ସହଯୋଗ କରୁଛନ୍ତି ।

୧୯୯୯ ମସିହା ଜୁଲାଇ ମାସଠାରୁ ୨୦୦୯ ମାର୍ଚ୍ଚ ୩୧– ନିଜର ଅଧ୍ୟାପନା ବୃତ୍ତିରୁ ଅବସର ନେବା ପର୍ଯ୍ୟନ୍ତ ନାଟ୍ୟକାର କାର୍ତ୍ତିକ ଚନ୍ଦ୍ର ରଥଙ୍କ ନେତାଜୀ ସୁଭାଷ ମେମୋରିଆଲ୍ ସିଟି କଲେଜ ହେଲା କର୍ମକ୍ଷେତ୍ର । କଟକ ତାଙ୍କ ବୃତ୍ତିର କ୍ଷେତ୍ର ହେବାରୁ ନାଟକ କ୍ଷେତ୍ରରେ ନିଜକୁ ଅଧିକତର ସକ୍ରିୟ ଭାବେ ବିନିଯୋଗ କଲେ ସେ । ସଂପ୍ରତି ନାଟ୍ୟ ରଚନା, ନାଟ୍ୟ ଆଲୋଚନା ଏବଂ ନାଟ୍ୟ ସଂଗଠନ କ୍ଷେତ୍ରରେ ନିଜକୁ ସେ ସଂପୂର୍ଣ୍ଣରୂପେ ସମର୍ପଣ କରି ଦେଇଛନ୍ତି ।

## ॥ ଦୃଶ୍ୟ : ଚାରି ॥

ଅନେକ ସୃଷ୍ଟିର ସ୍ରଷ୍ଟା କାର୍ତ୍ତିକ ଚନ୍ଦ୍ର । ତାଙ୍କର ସୃଷ୍ଟି-ସମ୍ଭାର ମହାର୍ଘ । ୧୯୬୩ ମସିହାରୁ ଏ ପର୍ଯ୍ୟନ୍ତ ଶତାଧିକ ନାଟକ ଓ ଏକାଙ୍କିକା ସେ ଭେଟି ଦେଇଛନ୍ତି ନିଜର ପ୍ରିୟ ପାଠକ ଓ ଦର୍ଶକଙ୍କୁ । କର୍ମମୁଖର ଜୀବନ ତାଙ୍କର କୁଳୁକୁଳୁ ହୋଇ ଗୀତ ଗାଇ ଚାଲିଛି । ସେ ଗୀତରେ ଅଛି ମନମୁଗ୍ଧ ସଂଳାପ, ହୃଦୟସ୍ପର୍ଶୀ ଶବ୍ଦରାଜି ଆଉ ଭାବୋଦ୍ଦୀପକ କାହାଣୀର ତାନ । ସେ ସୃଷ୍ଟିଗୁଡ଼ିକ ହେଲା - 'ଏଇ ଦେଶ ଏଇମାଟି' ଓ 'ଦୁଇ ଟୋପା ଲୁହ' (୧୯୬୩), 'ଦୀପ ଲିଭି ଲିଭି ଯାଏ' ଓ 'ଗୋଟିଏ ସାଗର କୋଟିଏ ଢେଉ'(୧୯୬୪), 'ଏ ସୃଷ୍ଟି ଅମୃତମୟ' ଓ 'କଳା ଓ କଳଙ୍କ' (୧୯୬୫), 'ଜୀବନ-ଯଜ୍ଞ' ଓ 'ସବୁଜ ସୂର୍ଯ୍ୟ' (୧୯୬୬), 'ଉପତ୍ୟକା' ଓ 'କ୍ରୀତଦାସ' (୧୯୬୭), 'ଆଜିର ରାଜା', 'ସ୍ୱୟମ୍ବର' ଓ 'ଅନ୍ଧାରର ଆଇନା' (୧୯୬୮), 'ସ୍ୱର୍ଗଦ୍ୱାର' ଓ 'ଜଉଘର' (୧୯୬୯), 'ସମୁଦ୍ରର ରଙ୍ଗ ଯନ୍ତ୍ରଣା' ଓ 'ଅବଶିଷ୍ଟ ପୃଥିବୀ' (୧୯୭୦), 'ସ୍ମୃତି', 'ସାନ୍ତ୍ୱନା ଓ ଶୂନ୍ୟତା' ଓ 'ଦର୍ପଣ' (୧୯୭୧), 'ଦ୍ୱିତୀୟ ଦର୍ପଣ' ଓ 'ତୃତୀୟ ପୃଥିବୀ' (୧୯୭୦), 'ଆଗାମୀ ଅତୀତ', 'ଚିରନ୍ତନ ବର୍ତ୍ତମାନ' ଓ 'ଅନ୍ୟ ଆକାଶ' (୧୯୭୩), 'ଚାରିକାନ୍ଥର କାହାଣୀ', 'ଅସ୍ତ ସୂର୍ଯ୍ୟର ଶ୍ମଶାନ' ଓ 'ବହ୍ନିମାନ୍' (୧୯୭୪), 'ମାଂସର ଫୁଲ' ଓ 'ମହାଭାରତର ଅନ୍ତିମ ପର୍ବ' (୧୯୭୫), 'ଈଶ୍ୱର ଜଣେ ଯୁବକ' (୧୯୭୬), 'ମୁଁ ଦୁହେଁ' ଓ 'ଶହୀଦ୍ ଭଗତ୍ ସିଂହ' (୧୯୭୭), 'ଯେହେତୁ ସ୍କାଇଲାବ୍' ଓ 'ଅଥଚ ରାମାୟଣ' (୧୯୭୮), 'ଚଇତି ଘୋଡ଼ା' ଓ 'ପ୍ରେମ-ରତ୍ନ' (୧୯୭୯), 'ରକ୍ତର ପାହାଡ଼', 'ମା' ମାଟି ଓ ମଣିଷ' (ବିଶ୍ୱବିଖ୍ୟାତ କ୍ରାନ୍ତିକାରୀ ନାଟ୍ୟକାର ବର୍ଟୋଲ୍ଟ ବ୍ରେଶଟ୍‌ଙ୍କ ଏକ ନାଟକର ଅନୁବାଦ) (୧୯୮୦), 'ଶୁକ ଶାରୀ କଥା' ଓ 'ଦ୍ୱିତୀୟ ଦ୍ରୌପଦୀ' (୧୯୮୧), 'ଜଙ୍ଗଲୀ ସହର', 'ଅନ୍ୱେଷଣ' ଓ 'ସନ୍ଧ୍ୟାନାଦ' (୧୯୮୨), 'ନିସଙ୍ଗ ନିଃସର୍ଗ' (ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ), 'ଆଧୁନିକ ଏକାଙ୍କିକା ଗୁଚ୍ଛ' (୧୯୮୩), 'ଶୁକ୍ଳପକ୍ଷ କୃଷ୍ଣପକ୍ଷ' ଓ 'ପ୍ରଜାପତି' (୧୯୮୪), 'ରକ୍ତର ଫୁଲ' ଓ 'ବନାମ ଅଭିନେତା' (୧୯୮୫), 'ଅକ୍ଳାନ୍ତ ଅଭିମନ୍ୟୁ' ଓ 'ଆହୁତି' (ଦୂରଦର୍ଶନ କଟକ କେନ୍ଦ୍ରରୁ ପ୍ରସାରିତ ପ୍ରଥମ ଟି.ଭି. ସିରିଏଲ୍)

(୧୯୮୬), 'ଶୁଖିଲା ମାଟିର ଲୁହ' ଓ 'ଚନ୍ଦ୍ରବିନ୍ଦୁ' (୧୯୮୭), 'ପାଦ ତଳର ଆକାଶ' (୧୯୮୮), 'କଟକ ନଗର ବରଷ ହଜାର' (୧୯୮୯), 'ରାଜନନ୍ଦିନୀ' ଓ 'ମହାମେଘବାହନ ଖାରବେଳ' (୧୯୯୦), 'ଈଶ୍ୱରୀ' ଓ 'ତାଳଗଛର ଛାଇ' (୧୯୯୧), 'ଅଗ୍ନି-ସମ୍ଭବା' (୧୯୯୨), 'ସର୍ବଂସହା' (୧୯୯୩), 'ଆକାଶ କେତେ ଅନନ୍ତ ସେତେ' (୧୯୯୪), 'ତରଙ୍ଗ' (ନୂଆଦିଲ୍ଲୀ ଦୂରଦର୍ଶନରୁ ପ୍ରସାରିତ ହିନ୍ଦୀ ଟି.ଭି. ସିରିଏଲ୍) (୧୯୯୫) । ଏଥିମଧ୍ୟରୁ କେତୋଟି ନାଟକ ଇଂରାଜୀ ସମେତ ବିଭିନ୍ନ ଆଞ୍ଚଳିକ ଭାଷାରେ ଅନୂଦିତ ହୋଇଛି ।

ପରବର୍ତ୍ତୀ କାଳରେ ଥିଏଟର୍ ଅଲିମ୍ପିଆଡ୍‌ର ସାଂଗଠନିକ କାର୍ଯ୍ୟରେ ବ୍ୟସ୍ତତା ହେତୁ ନାଟ୍ୟ ରଚନା ତାଙ୍କର ଟିକେ ଧିମେଇ ଯାଇଥିଲା । ତଥାପି ସେ ବେଶ୍ କେତୋଟି ଏକାଙ୍କିକା ଓ ଛୋଟ ନାଟକ ଲେଖି କଟକ ତଥା ରାଜ୍ୟ ବାହାରେ ମଞ୍ଚସ୍ଥ କରାଇଥିଲେ । ସେ ୫୦ରୁ ବେଶି ନାଟିକା ଓ ଏକାଙ୍କିକାର ସ୍ରଷ୍ଟା । ଶତାଧିକ ନୃତ୍ୟାଙ୍ଗନାଙ୍କୁ ନେଇ କଟକ କଳା ବିକାଶ କେନ୍ଦ୍ର ପକ୍ଷରୁ ରାଜ୍ୟ ତଥା ରାଜ୍ୟ ବାହାରେ ଶତାଧିକ ବାର ପରିବେଷିତ ରାମଚରିତ ମାନସ ଉପରେ ଆଧାରିତ ନୃତ୍ୟ-ନାଟିକା 'ସୀତା ବିବାହ'ର ରଚନାକାର ହେଉଛନ୍ତି ନାଟ୍ୟକାର କାର୍ତ୍ତିକ ଚନ୍ଦ୍ର । ସେହିପରି ତାଙ୍କର ଅନ୍ୟ ଏକ ନୃତ୍ୟ-ନାଟିକା 'ଉଷା-ପରିଣୟ' ଅର୍ଦ୍ଧଶତାଧିକ ନୃତ୍ୟାଙ୍ଗନାଙ୍କ ସମାବେଶରେ କଳା ବିକାଶ କେନ୍ଦ୍ର ପକ୍ଷରୁ ସଂଖ୍ୟାଧିକ ଥର ପ୍ରଦର୍ଶିତ ହୋଇଥିଲା । ଶତାଧିକ ଗୀତିକବିତାର ରଚୟିତା ସେ । ତାଙ୍କର ନାଟ୍ୟସଂସ୍କୃତି ସମ୍ବନ୍ଧୀୟ ଅନେକ ପ୍ରବନ୍ଧ ଓ ଆଲୋଚନା ପ୍ରକାଶିତ ହୋଇଆସିଛି । ନୂଆଦିଲ୍ଲୀସ୍ଥିତ ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ୍ ଦ୍ୱାରା ପ୍ରକାଶିତ 'ହିନ୍ଦୀ ଏକାଙ୍କୀ'କୁ ସେ ଓଡ଼ିଆ ଭାଷାରେ ଅନୁବାଦ କରିଥିଲେ । ଛୋଟ ପିଲାମାନଙ୍କ ପାଇଁ ସେ ଅନେକଗୁଡ଼ିଏ ଶିଶୁ ଉପଯୋଗୀ ପୁସ୍ତକ ମଧ୍ୟ ରଚନା କରିଥିଲେ । ନାଟ୍ୟକାର ରଥ ଏକାଧାରରେ ରଙ୍ଗମଞ୍ଚ ସହ ରେଡ଼ିଓ, ଚଳଚ୍ଚିତ୍ର, ଟେଲିଭିଜନ୍, ଏପରିକି ଯାତ୍ରା ନାଟକ ଲେଖକ ଭାବେ ମଧ୍ୟ ନିଜର କୃତିତ୍ୱ ପ୍ରଦର୍ଶନ କରି ପାରିଥିଲେ । ସେ ପ୍ରସିଦ୍ଧ ତୁଳସୀ ଗଣନାଟ୍ୟ ପାଇଁ 'ଅକ୍ଳାନ୍ତ ଅଭିମନ୍ୟୁ' ଯାତ୍ରା ନାଟକ ଲେଖି ତାହାର ନିର୍ଦ୍ଦେଶନା ମଧ୍ୟ ଦେଇଥିଲେ । ପରବର୍ତ୍ତୀ କାଳରେ ସେ 'ଓଡ଼ିଶାରେ ଲୋକନାଟ୍ୟ ପରମ୍ପରା' ଓ 'ଓଡ଼ିଶାର ଲୋକନାଟ୍ୟ ଧାରା' ଶୀର୍ଷକ ଦୁଇଟି ବୃହତ୍ ଆଲୋଚନା ପୁସ୍ତକ ସଂକଳନ କରିଥିଲେ । ସେହିପରି ଇଂରାଜୀ ଭାଷାରେ 'ଭାରତୀୟ ଲୋକନାଟକ' ଓ 'ଭାରତୀୟ ଲୋକନୃତ୍ୟ' ଶୀର୍ଷକ ଅନ୍ୟ ଦୁଇଟି ସଂକଳନ ମଧ୍ୟ ପ୍ରସ୍ତୁତ କରିଥିଲେ । ଇଂରାଜୀ ଭାଷାରେ ତାଙ୍କର ଅନ୍ୟ ଦୁଇଟି ସଂକ୍ଳିତକୃତି ହେଲା 'ଭାରତୀୟ ଶାସ୍ତ୍ରୀୟ ନୃତ୍ୟ' ଏବଂ 'ସାଂପ୍ରତିକ ଭାରତୀୟ ନାଟକ ଓ ରଙ୍ଗମଞ୍ଚ' ।

୨୦୧୧ ମସିହାରେ ନାଟ୍ୟକାର ରଥଙ୍କ ଏକ ଏକାଙ୍କିକା ସଂକଳନ 'ଆହୁତି - ଲୁହରେ ଲହୁରେ ...' ପ୍ରକାଶ ପାଇଥିଲା । ଜାତୀୟ ଶିକ୍ଷାନୀତି ଆଧାରରେ ଅଷ୍ଟମ ଶ୍ରେଣୀ ଛାତ୍ରଛାତ୍ରୀଙ୍କ ପାଇଁ ମାଧ୍ୟମିକ ଶିକ୍ଷା ପରିଷଦ, ଓଡ଼ିଶାଙ୍କ ଦ୍ୱାରା ୨୦୧୧ ଶିକ୍ଷାବର୍ଷରୁ ପ୍ରବର୍ତ୍ତିତ ସାହିତ୍ୟ ପୁସ୍ତକ 'ସାହିତ୍ୟିକା'ରେ ତାଙ୍କର 'ଆହୁତି' ଏକାଙ୍କିକାଟି ସ୍ଥାନ ପାଇବା ନାଟ୍ୟକାରଙ୍କ ପାଇଁ ପରମ ସୌଭାଗ୍ୟ । ପ୍ରତିବର୍ଷ ଓଡ଼ିଶାର ଲକ୍ଷ ଲକ୍ଷ ଛାତ୍ରଛାତ୍ରୀ ଏବଂ ହଜାର ହଜାର ଶିକ୍ଷକ ଶିକ୍ଷୟିତ୍ରୀ ଏହି ଏକାଙ୍କିକାଟିକୁ ପଢ଼ିବା ଓ ପଢ଼େଇବାର ସୁଯୋଗ ପାଇ ପାରଛନ୍ତି । ଇତି ମଧ୍ୟରେ ଏହି 'ଆହୁତି' ଏକାଙ୍କିକାଟି ଆଇ.ସି.ଏସ୍.ଇ. କୋର୍ସ୍‌ର ନବମ ଶ୍ରେଣୀ ପାଠ୍ୟକ୍ରମରେ ମଧ୍ୟ ସ୍ଥାନ ପାଇଛି । ଏହା ନାଟ୍ୟକାରଙ୍କ ପାଇଁ ଊଣା ଗୌରବ ନୁହେଁ ।

୨୦୧୪ ମସିହାରେ ଶ୍ରୀ ରଥ ରଚନା କରିଥିବା ସଦ୍ୟତମ ନାଟକ ହେଉଛି - 'ସତ୍ୟ ସନ୍ଧାନୀ ଗାନ୍ଧିଜୀ' । ଜଷ୍ଟିସ୍ ଇନ୍ଦ୍ରଜିତ୍ ମହାନ୍ତିଙ୍କ ଆଗ୍ରହ କ୍ରମେ କଟକସ୍ଥିତ ଓଡ଼ିଶା ଜୁଡ଼ିସିଆଲ୍ ଏକାଡ଼େମୀ ଆନୁକୂଲ୍ୟରେ ଏକାଡ଼େମୀର ନବନିର୍ମିତ ଅତ୍ୟାଧୁନିକ ପ୍ରେକ୍ଷାଳୟରେ ତାଲିମ୍ ନେଉଥିବା ଜୁଡ଼ିସିଆଲ୍ ଅଫିସର୍‌ମାନଙ୍କ ଦ୍ୱାରା ନାଟକଟି ତାଙ୍କରି ନିର୍ଦ୍ଦେଶନାରେ ଚଳଚ୍ଚିତ୍ରର କିଞ୍ଚିତ୍ ଦୃଶ୍ୟର ଅବତାରଣାରେ ଚମତ୍କାର ଶୈଳୀରେ ପ୍ରଦର୍ଶିତ ହୋଇଥିଲା । ଏହାର ସାରାଂଶ ହେଉଛି– "ଗାନ୍ଧୀଜୀଙ୍କ ଦୃଷ୍ଟିରେ - ଓକିଲାତି ହେଉଛି ଗୋଟାଏ ଆଦର୍ଶ ପେଷା । ଓକିଲାତିର ଅର୍ଥ ... ଅର୍ଥ ଉପାର୍ଜନ ନୁହେଁ, ବରଂ ଜନସେବା । ଆଡ଼ଭୋକେଟ୍‌ର ଏକାନ୍ତ କର୍ତ୍ତବ୍ୟ ସାଧାରଣ ଜନତାଙ୍କୁ ନ୍ୟାୟ ପ୍ରଦାନ କରିବା । ଏବଂ ଜଣେ ବାରିଷ୍ଟର୍‌ର ପରମ ଧର୍ମ ହେଉଛି– ସତ୍ୟ ପ୍ରତି ଆସ୍ଥା ରଖି ଦୁଃଖି ଗରୀବଙ୍କୁ ମାଗଣାରେ ଆଇନ୍ ସେବା ଯୋଗାଇ ଦେବା । ମୋହନଦାସ କରମଚାନ୍ଦ୍ ଗାନ୍ଧୀ ଭାରତରୁ ଇଂଲଣ୍ଡ ଯାଇ ବାରିଷ୍ଟରୀ ପାସ୍ କରି ଦକ୍ଷିଣ ଆଫ୍ରିକା ଆସିଥିଲେ ଓକିଲାତି କରିବାକୁ । ତାଙ୍କର ଓକିଲାତି କରିବାର ଏକମାତ୍ର ଲକ୍ଷ୍ୟ ଥିଲା– ଲୋକମାନଙ୍କର ସେବା ! ସତ୍ୟ ପ୍ରତି ନିଷ୍ଠା ଓ ସଂକଳ୍ପ ଥିଲା ତାଙ୍କ ଜୀବନର ଆଦର୍ଶ ! ସେ କହୁଥିଲେ– ମାନବ ସେବା ହିଁ ମାଧବ ସେବା । ସେ ସବୁବେଳେ ଚାହୁଁଥିଲେ– ମହକିଲର ମକଦ୍ଦମା ସତ ହୋଇଥିଲେ ଜୟ ହେଉ ଏବଂ ମିଛ ହୋଇଥିଲେ ହାର୍ ହେଉ । ଗାନ୍ଧୀଜୀ ଆଉ ମଧ୍ୟ ଚାହୁଁଥିଲେ– କେସ୍‌ର ଫଇସଲା କୋର୍ଟ୍‌ରେ ନୁହେଁ, କୋର୍ଟ୍ ବାହାରେ ହିଁ ଆପୋଷ ବୁଝାମଣା ମାଧ୍ୟମରେ ହୋଇଯିବା ଦରକାର । ସେ ମହକିଲଠାରୁ ଯାହା ସାମାନ୍ୟ ହାତ ଖର୍ଚ୍ଚ ବା ପକେଟ୍ ଖର୍ଚ୍ଚ ନେଉଥିଲେ... ତା'ଠାରୁ ଅଧିକ କିଛି ନୁହେଁ ।" ବାରିଷ୍ଟର୍ ମୋହନଦାସ କରମ୍‌ଚାନ୍ଦ ଗାନ୍ଧୀଙ୍କ ଓକିଲାତି ଜୀବନର କିୟଦଂଶକୁ ନେଇ ଏଇ ନାଟକ । ଏହାର ପ୍ରଦର୍ଶନ ଦିଗରେ ତାଙ୍କୁ ପ୍ରୋତ୍ସାହିତ କରିଥିଲେ ଏକାଡ଼େମୀର ତତ୍‌କାଳୀନ ନିର୍ଦ୍ଦେଶକ ଡ଼କ୍ଟର୍ ଦୁର୍ଗା ପ୍ରସନ୍ନ ଚୌଧୁରୀ ।

୨୦୧୪ ମସିହାରେ ପ୍ରକାଶିତ ହୋଇଛି କାର୍ତ୍ତିକ ଚନ୍ଦ୍ରଙ୍କ ଏକ ନୂଆ ସ୍ୱାଦର ସାରସ୍ୱତ ସଂକଳନ– 'ମାଆ' । 'ମାଆ'ର ଚିନ୍ତାକଳ୍ପକୁ ନେଇ ଏହି ସଂକଳନଟି ନାଟକ, କବିତା, ପ୍ରବନ୍ଧ ଓ ଗଳ୍ପର ଏକ ଅନୁପମ, ଅଭିନବ ତଥା ଅପୂର୍ବ ସାରସ୍ୱତ ପ୍ରୟାସ । ସାହିତ୍ୟ ଜଗତରେ ପ୍ରଥମ ଥର ପାଇଁ ବିଭିନ୍ନ ବିଭାଗର ସମାବେଶ ଏବଂ ଭିନ୍ନ ଭିନ୍ନ ଶୈଳୀର ଅବତାରଣାରେ ଏହାକୁ ଏକତ୍ର ରଚନା କରିଛନ୍ତି ତାଙ୍କ ସଂସ୍କୃତିସଂପନ୍ନ ପରିବାରର ଚାରି ଭାଇଭଉଣୀ– ନାଟ୍ୟକାର ଅଧ୍ୟାପକ କାର୍ତ୍ତିକ ଚନ୍ଦ୍ର ରଥ, ସୁଲେଖିକା, ସମାଜସେବୀ, ଆଡ୍‌ଭୋକେଟ୍ ଶୈଳବାଳା ପୂଜାରୀ, ଶିକ୍ଷୟିତ୍ରୀ ସରୋଜିନୀ ରଥ ଏବଂ ସୁଗୃହିଣୀ ସୁବାସିନୀ ଦାଶ ।

ନିଜ ଶ୍ରେଷ୍ଠ ନାଟ୍ୟ-କୃତି ସଂପର୍କରେ ନାଟ୍ୟକାର କାର୍ତ୍ତିକ ଚନ୍ଦ୍ର କହନ୍ତି, "ଏ ଭଳି ପ୍ରଶ୍ନର ଉତ୍ତର ଦେବା କାଠିକର ପାଠ । ତେବେ ଅନେକେ 'ବହ୍ନିମାନ୍' ନାଟକ ପାଇଁ ମୋତେ ଅଧିକ ବଧେଇ ଜଣେଇଥା'ନ୍ତି । ଏହି ନାଟକର ନେପଥ୍ୟ ସ୍ୱର ହେଉଛି– 'ସର୍ବହରା... ଲଢ଼େ, ହାରେ, ପୁନର୍ବାର ଲଢ଼େ, ପୁନର୍ବାର ହାରେ, ପୁନର୍ବାର ଲଢ଼େ... ଅନ୍ତିମ ବିଜୟ ପର୍ଯ୍ୟନ୍ତ !' ଏଥିରେ ମୁଁ ଯୁଗେ ଯୁଗେ ସର୍ବହରାର ଶ୍ରେଣୀ ସଂଘର୍ଷ ଏବଂ ପ୍ରତି ଯୁଗରେ ମାନବତାର ଜୟକୁ ଯୁଗୋପଯୋଗୀ ନାଟ୍ୟ-ଶୈଳୀ ମାଧ୍ୟମରେ ପରିବେଷଣ ପାଇଁ ଆୟାସସାଧ୍ୟ ନୂତନ ପରୀକ୍ଷା ଓ ପ୍ରୟୋଗ କରିଛି । ନାଟକର ପ୍ରତ୍ୟେକଟି ଚରିତ୍ର ସମଗ୍ର ମାନବ ସମାଜର ଯଥାର୍ଥ ପ୍ରତିନିଧି ଏବଂ ସେମାନଙ୍କର ସଂଳାପ ପ୍ରତ୍ୟେକଟି ମଣିଷର ଅନ୍ତରର କଥା ଓ ବ୍ୟଥା । ବିଶେଷ କରି ଓଡ଼ିଆ ନାଟକର କ୍ରମବିକାଶର ଧାରାକୁ ଦୃଷ୍ଟି ଆଗରେ ରଖି ଏହାର ପ୍ରତ୍ୟେକ ଦୃଶ୍ୟରେ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ନାଟ୍ୟଶୈଳୀର ଅଭିନବ ପ୍ରୟୋଗ କରାଯାଇଛି । ଏଥିରେ ସର୍ବଜନାଦୃତ ଲୋକ ନାଟକର ଝଲକ ମଧ୍ୟ ରହିଛି । ସେଇଥିପାଇଁ ବୋଧହୁଏ ସମସ୍ତେ ଏଇ ନାଟକଟିକୁ ଅଧିକ ପସନ୍ଦ କରନ୍ତି ।"

ଜଣେ ନାଟ୍ୟକାର ଭାବେ ନିଜର ଦାୟବଦ୍ଧ ଭୂମିକା ସଂପର୍କରେ ସେ ସବୁବେଳେ ସଚେତନ । ସେଥିପାଇଁ ସେ ଶାରୀରିକ ପ୍ରତିକୂଳ ସ୍ଥିତିକୁ ଭ୍ରୂକ୍ଷେପ ନ କରି ସବୁ ସମୟରେ ସବୁ କ୍ଷେତ୍ରରେ ଆଗକୁ ଆଗକୁ ବଢ଼ି ଚାଲିଛନ୍ତି । ସେ ସଂପର୍କରେ ତାଙ୍କ ମତ ହେଉଛି, "ପ୍ରତ୍ୟେକ ନାଟ୍ୟକାର ଜଣେ ଜଣେ ସାମାଜିକ କର୍ତ୍ତା ତଥା ସାଂସ୍କୃତିକ ନେତା । ନିଜେ ଲେଖିଥିବା ନାଟକଟିର ବିଭିନ୍ନ ଚରିତ୍ର ବହୁ ଜୀବନ୍ତ ଅଭିନେତା ଓ ଅଭିନେତ୍ରୀମାନଙ୍କ ମାଧ୍ୟମରେ ଅଗଣିତ ଦର୍ଶକଙ୍କ ସମ୍ମୁଖରେ ପରିବେଷିତ ହେଲା ବେଳେ ଉପସ୍ଥିତ ନାଟ୍ୟକାରଙ୍କ ମନରେ, ହୃଦୟରେ, ଆତ୍ମାରେ ଅପୂର୍ବ ପୁଲକ ସୃଷ୍ଟି ହୋଇଥାଏ । ସମାଜିକ ଅଙ୍ଗୀକାରବଦ୍ଧ ନାଟ୍ୟକାରଙ୍କ ସମାଜ ପ୍ରତି ଦାୟିତ୍ୱ ଓ କର୍ତ୍ତବ୍ୟ ଅନ୍ୟମାନଙ୍କଠାରୁ ଢେର୍ ବେଶୀ ଗଣଚେତନା ଓ ଜନଜାଗରଣ ସୃଷ୍ଟିରେ । ତେଣୁ ସମାଜ, ସାହିତ୍ୟ ଓ ସଂସ୍କୃତି ପ୍ରତିଟି

କ୍ଷେତ୍ରରେ ନାଟ୍ୟକାରଙ୍କ ନେତୃତ୍ୱ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଜଣେ ନାଟ୍ୟକାର ନିଜ ସୃଷ୍ଟି ବଳରେ "'ଅ'ଠାରୁ 'ଅନନ୍ତ' ପର୍ଯ୍ୟନ୍ତ ପ୍ରସାରିତ ହୋଇପାରେ । ସୃଷ୍ଟିର ଆରମ୍ଭରୁ ସୃଷ୍ଟିର ଅନ୍ତ ପର୍ଯ୍ୟନ୍ତ ପରିକଳ୍ପନା କରିପାରେ । ସବୁରି ମୂଳରେ ତା'ର କିନ୍ତୁ ଗୋଟିଏ ମାତ୍ର ବାର୍ତ୍ତା - ସାମାଜିକ ମୂଲ୍ୟବୋଧ ଓ ମାନବିକ ସମ୍ବେଦନା । ତା' ରଚନାର ମୂଳମନ୍ତ୍ର ହେଉଛି - 'ସବାର୍ ଉପରେ ମାନୁଷ୍ ସତ୍ତି, ଓର୍ ଉପରେ ନେଇ ... !' ଅର୍ଥାତ୍ 'ଆକାଶର ଈଶ୍ୱର ଯିଏ ହେଉ ନା କାହିଁକି, ମାଟିର ଈଶ୍ୱର କିନ୍ତୁ ମଣିଷ !'

ପ୍ରତିଭା ଥିଲେ ସୁଯୋଗ ମିଳେ, ବେଳେବେଳେ ଅପୂର୍ବ ସୁଯୋଗ ମିଳେ । କାର୍ତ୍ତିକ ଚନ୍ଦ୍ରଙ୍କ ପାଇଁ ସେ ସୁଯୋଗ ମିଳିଥିଲା । ତାହା ଥିଲା ତାଙ୍କର ଚଳଚ୍ଚିତ୍ର କ୍ଷେତ୍ରକୁ ପ୍ରବେଶ । ଚଳଚ୍ଚିତ୍ର ନିର୍ଦ୍ଦେଶକ ଶିଶିର ମିଶ୍ର ଥିଲେ ଗୁଣଚିହ୍ନା ଗୁଣିଆ । ତାଙ୍କ ସହିତ ମୋ' ସମେତ ସେତେବେଳେ ଅନ୍ୟ ଯେଉଁମାନେ ସହକାରୀ ଥିଲେ, ସେମାନଙ୍କ ମଧ୍ୟରୁ ଶ୍ରୀକାନ୍ତ ଚୌଧୁରୀ, ଜ୍ୟୋତିପ୍ରକାଶ ଓ ହର ପଟ୍ଟନାୟକ ଅନ୍ୟତମ । ଶିଶିର ମିଶ୍ରଙ୍କ ନିର୍ଦ୍ଦେଶିତ ବମ୍ବେରେ ନିର୍ମିତ ହିନ୍ଦୀ ଚଳଚ୍ଚିତ୍ର 'ଭିଗୀ ପଲ୍‌କେଁ'ରେ ସମଭାଗୀ ଚିତ୍ରନାଟ୍ୟ ଲେଖକ ଥିଲେ କାର୍ତ୍ତିକ ଚନ୍ଦ୍ର ରଥ । ଏହାର ମୁଖ୍ୟ ଚରିତ୍ରରେ ହୃଦୟସ୍ପର୍ଶୀ ଅଭିନୟ କରିଥିଲେ ରାଜ୍ ବବ୍‌ବର ଓ ସ୍ମିତା ପାଟିଲ୍ । ସେତେବେଳର ଓଡ଼ିଶାର ଶ୍ରେଷ୍ଠ ଚଳଚ୍ଚିତ୍ର ପ୍ରଯୋଜନା ସଂସ୍ଥା 'ଛାୟାବାଣୀ ପ୍ରତିଷ୍ଠାନ'ର ବାବୁଲାଲ୍ ଦୋଶୀ ପୂର୍ବରୁ 'ଅଦିନ ମେଘ', 'ଅମଡ଼ାବାଟ', 'ଅଭିନେତ୍ରୀ', 'ମାଟିର ମଣିଷ', 'ମଥୁରା ବିଜୟ' ଭଳି ବହୁ ଖ୍ୟାତିପ୍ରାପ୍ତ ଓଡ଼ିଆ ଚଳଚ୍ଚିତ୍ର ନିର୍ମାଣ କରିସାରିଥିଲେ । ସେହି ବ୍ୟାନର୍‌ରେ କାର୍ଯ୍ୟ କରିବା ପାଇଁ କାର୍ତ୍ତିକ ଚନ୍ଦ୍ରଙ୍କୁ ଅପୂର୍ବ ସୁଯୋଗ ମିଳିଥିଲା । ବାବୁଲାଲ୍ ଦୋଶୀଙ୍କ ପ୍ରେରଣାରେ କନିଷ୍ଠ ବୟସରେ ସେ ଲେଖିଥିଲେ କଳାତ୍ମକ ଓଡ଼ିଆ ଚଳଚ୍ଚିତ୍ର 'ଅକ୍ଷି ତୃତୀୟା'ର କାହାଣୀ, ସଂଳାପ ଓ ଚିତ୍ରନାଟ୍ୟ ସହ ଗୋଟିଏ ଗୀତ । ଏହାର ମୁଖ୍ୟ ଚରିତ୍ରରେ ଅଭିନୟ କରିଥିଲେ ଶରତ ପୂଜାରୀ, ଅନିତା ଦାସ, ଉତ୍ତମ ମହାନ୍ତି, ଦୀପା ସାହୁ, ନିରଞ୍ଜନ ଶତପଥି, ସଂଯୁକ୍ତା ପଟ୍ଟନାୟକ, ପ୍ରସନ୍ନ ମିଶ୍ର, ବୈକୁଣ୍ଠ ନାଥ ମହାନ୍ତି (ବଇଭାଇ), ଶ୍ୟାମଳେନ୍ଦୁ, ନମ୍ରତା ଦାସ ପ୍ରମୁଖ । ଏହାର ନିର୍ଦ୍ଦେଶକ ଥିଲେ କଲିକତାର ସୁଶୀଲ୍ କୁମାର ମୁଖାର୍ଜୀ । ପରେ ପରେ ଶରତ ପୂଜାରୀଙ୍କ ନିର୍ଦ୍ଦେଶନାରେ ସମ୍ବଲପୁରରେ ନିର୍ମିତ ଓଡ଼ିଆ ଚଳଚ୍ଚିତ୍ର 'ଅସ୍ତରାଗ'ର ସେ ଥିଲେ ସଂଳାପ ଲେଖକ । ଶରତ ପୂଜାରୀ, ଅନିତା ଦାସ ସହ ଉତ୍ତମ ମହାନ୍ତିଙ୍କ ନାୟିକା ଭୂମିକାରେ ଅଭିନୟ କରିଥିବା ଅପରାଜିତାଙ୍କର ଏହା ଥିଲା ପ୍ରଥମ ଚଳଚ୍ଚିତ୍ର । ଏଥିରେ ଲେଖକଙ୍କର ଗୋଟିଏ ଶ୍ରୁତିମଧୁର ସ୍ମରଣୀୟ ସଂଳାପ ଥିଲା– 'ଏ ଦୁନିଆଁରେ ଭଉଣୀ ହେଉଛି କେବଳ ଜଣେ ଯା' ଆଖିର ଲୁହରେ ମା'ର ମମତା ଥାଏ !' ପରିବାରର ଦାୟିତ୍ୱ, ଶାରୀରିକ ଅସୁସ୍ଥତା, ଚାକିରିଗତ ଅସୁବିଧା ତଥା ଅତିବେଶୀ ପେଶାଦାରୀ ମନୋବୃତ୍ତି ହେତୁ ସେ ଚଳଚ୍ଚିତ୍ର ଦୌଡ଼ରେ ବେଶି ଦିନ ସାମିଲ୍

ହୋଇ ପାରିଲେ ନାହିଁ । ନାଟକ ଓ ରଙ୍ଗମଞ୍ଚ ପ୍ରତି ତାଙ୍କର ଅଙ୍ଗୀକାର ତାଙ୍କୁ ଚଳଚ୍ଚିତ୍ରଠାରୁ ସବୁବେଳେ ଦୂରେଇ ରଖିଲା ।

ନାଟ୍ୟକାର ରଥଙ୍କ ରଚିତ 'ଆହୁତି' ପ୍ରଥମ ଓଡ଼ିଆ ଧାରାବାହିକ ଭାବେ ୧୯୮୬ ମସିହାରେ ଦୂରଦର୍ଶନ କେନ୍ଦ୍ର, କଟକ ଆନୁକୂଲ୍ୟରେ ପ୍ରସାରିତ ହୋଇଥିଲା । ସେତେବେଳେ କଟକ କେନ୍ଦ୍ରରୁ ଟେଲିକାଷ୍ଟର ସୁବିଧା ନ ଥିବାରୁ ଏହାର ଏପିସୋଡ୍‌ଗୁଡ଼ିକୁ କଟକ ଷ୍ଟୁଡ଼ିଓରେ ରେକର୍ଡିଂ କରାଯାଇ ଦିଲ୍ଲୀ ଦୂରଦର୍ଶନର ମୁଖ୍ୟ କେନ୍ଦ୍ରକୁ ପଠାଯାଉଥିଲା ଏବଂ ସେଠାରୁ ଏହି ଧାରାବାହିକ ସପ୍ତାହରେ ଗୋଟିଏ ସନ୍ଧ୍ୟାରେ ଓଡ଼ିଆ କାର୍ଯ୍ୟକ୍ରମର ସଂକ୍ଷିପ୍ତ ପ୍ରସାରଣ ଅବସରରେ ପ୍ରସାରିତ ହେଉଥିଲା । କେନ୍ଦ୍ରର ନିର୍ଦ୍ଦେଶିକା ବୀଣା ଦେବୀ ତଥା ପରିଚାଳକ ତାପସ ବୋଷ ନାଟ୍ୟକାରଙ୍କୁ ଏ ଦିଗରେ ବେଶ୍ ଉତ୍ସାହିତ କରିଥିଲେ । ସେହିପରି ୧୯୯୫ ମସିହାରେ ଦିଲ୍ଲୀର ରାଷ୍ଟ୍ରୀୟ ଦୂରଦର୍ଶନ ଚ୍ୟାନେଲ୍‌ରେ ଉଦୟ ଶଙ୍କର ଦାଶ ଓ ଦେବୀ ପ୍ରସାଦ ଦାଶଙ୍କ ପ୍ରଯୋଜନାରେ କାର୍ତ୍ତିକ ଚନ୍ଦ୍ରଙ୍କ ରଚିତ ହିନ୍ଦୀ ସିରିଆଲ୍ 'ତରଙ୍ଗ' ମଧ୍ୟ ପ୍ରସାରିତ ହୋଇ ବେଶ୍ ଚହଳ ସୃଷ୍ଟି କରି ପାରିଥିଲା ।

ପରବର୍ତ୍ତୀ ପର୍ଯ୍ୟାୟରେ ତାଙ୍କ ରଚିତ 'ଅନ୍ୟ ଆକାଶ' ଓ 'ଆକାଶ କେତେ ଅନ୍ତ ସତେ' ନାଟକ ଦୁଇଟି ଭୁବନେଶ୍ୱରଠାରେ ଥିବା ଭାରତ ସରକାରଙ୍କ ଗୀତ ଓ ନାଟକ ପ୍ରଭାଗ ପକ୍ଷରୁ ଦୀନେଶ ଚନ୍ଦ୍ର ରାଉତଙ୍କ ନିର୍ଦ୍ଦେଶନାରେ ପ୍ରଭାଗର ପୋଖତ କଳାକାରମାନଙ୍କ ଦ୍ୱାରା ଓଡ଼ିଶାର ପ୍ରାୟ ସମସ୍ତ ଜିଲ୍ଲାରେ ସଂଖ୍ୟାଧିକ ଥର ପ୍ରଦର୍ଶିତ ହୋଇଥିଲା ।

॥ ଦୃଶ୍ୟ : ପାଞ୍ଚ ॥

ହଜାରେ ବର୍ଷର ଐତିହାସିକ ନଗରୀ କଟକ ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ର ରୂପେ ଅଦ୍ୟାବଧି ଯେଉଁ ମର୍ଯ୍ୟାଦା ହାସଲ କରିଆସିଛି, ତାହାକୁ ବଜାୟ ରଖିବା ପାଇଁ, ଦ୍ୱିତୀୟତଃ ଏକଦା ତିନୋଟି ପେଶାଦାର ରଙ୍ଗମଞ୍ଚ ଦ୍ୱାରା ବର୍ଷ ବର୍ଷ ଧରି ପ୍ରତ୍ୟହ ନୂଆ ନୂଆ ନାଟକ ପରିବେଷଣର ଯେଉଁ ସମୃଦ୍ଧ ପରମ୍ପରା ରହି ଆସିଥିଲା, ଯାହାର ପାଦ-ପ୍ରଦୀପ କେବେଠୁଁ ନିର୍ବାପିତ, ସେହି ପରମ୍ପରାର ପୁନରୁଦ୍ଧାର ସହ ତାହାକୁ ପରିପୁଷ୍ଟ କରିବା ପାଇଁ, ନୂତନ ବଂଶଧରମାନଙ୍କୁ ନାଟକ ଓ ରଙ୍ଗମଞ୍ଚ ପ୍ରତି ଆକୃଷ୍ଟ କରିବା ସହ ନୂତନ ପିଢ଼ିର ନାଟ୍ୟକାର, ନିର୍ଦ୍ଦେଶକ, କଳାକାର ଗଢ଼ି ତୋଳିବା ପାଇଁ ନିରବଚ୍ଛିନ୍ନ ପ୍ରୟାସ ନାଟ୍ୟକାର କାର୍ତ୍ତିକ ଚନ୍ଦ୍ରଙ୍କ ଜୀବନର ବଡ଼ ସଫଳତା । ବହୁଭାଷୀ ନାଟକ ପ୍ରତିଯୋଗିତା ମାଧ୍ୟମରେ 'ବିବିଧତା ମଧ୍ୟରେ ଏକତା' ପ୍ରତିଷ୍ଠା ତଥା ନାଟକ ଓ ରଙ୍ଗମଞ୍ଚ ମାଧ୍ୟମରେ ଜାତୀୟ ସଂହତି, ରାଷ୍ଟ୍ରୀୟ ଏକତା ତଥା ସାଂପ୍ରଦାୟିକ ସଦ୍‌ଭାବର ପ୍ରସାର ଲକ୍ଷ୍ୟରେ ଇଣ୍ଡିଆ ଥିଏଟର ଅଲିମ୍ପିଆଡ୍‌ର ଆୟୋଜନ । ଅଧିକନ୍ତୁ ଆନ୍ତର୍ଜାତିକ ନାଟକ ମହୋତ୍ସବର କାର୍ଯ୍ୟ

ହେଉଛି ଓଡ଼ିଶା ମାଟିରେ କଟକଠାରେ ବିଭିନ୍ନ ଦେଶର ବିବିଧ ଶୈଳୀର ନାଟକମାନ ପ୍ରଦର୍ଶନ କରାଇ ଆନ୍ତର୍ଜାତୀୟ ମୈତ୍ରୀ-ପ୍ରୀତିର ପରିପ୍ରଚାର କରାଇବା ଏବଂ ଏ ସବୁ ମାଧ୍ୟମରେ ବିଶ୍ୱ ଦରବାରରେ ଓଡ଼ିଶାର କଳା ଓ ସଂସ୍କୃତି ତଥା ନାଟକ ରଙ୍ଗମଞ୍ଚକୁ ପରିଚିତ, ପ୍ରସାରିତ ତଥା ପ୍ରତିଷ୍ଠିତ କରିବାର ମହାନ୍ ଲକ୍ଷ୍ୟକୁ ଜୀବନର ମନ୍ତ୍ର ଭାବେ ଗ୍ରହଣ କରିଛନ୍ତି ଅଧ୍ୟାପକ କାର୍ତ୍ତିକ ଚନ୍ଦ୍ର ରଥ । ଇଣ୍ଡିଆ ଥିଏଟର୍ ଅଲିମ୍ପିଆଡ୍ ଓ ଇଣ୍ଟରନ୍ୟାସନାଲ୍ ଥିଏଟର୍ ଫେଷ୍ଟିଭାଲ୍‌ର ସଫଳ ଆୟୋଜନ ଏହି ଲକ୍ଷ୍ୟ ପରିପୂର୍ତ୍ତି କରିଚାଲିଛି । ଏହି ମହୋତ୍ସବରେ ଦେଶ ଓ ବିଦେଶର କଳାକାରମାନେ ବିଭିନ୍ନ ନାଟକର ଅଭିନୟ ମାଧ୍ୟମରେ ନାଟ୍ୟପ୍ରେମୀ, ନାଟ୍ୟକାର, ନାଟ୍ୟ-ସମାଲୋଚକଙ୍କୁ ନାଟକ ବା ଥିଏଟର୍‌ରେ ଦେଖା ଦେଇଥିବା ପରୀକ୍ଷା ନିରୀକ୍ଷା ଏବଂ ନାଟ୍ୟକଳାର କଳାତ୍ମକ ଓ ନାନ୍ଦନିକ ଦିଗ ସଂପର୍କରେ ଅବଗତ କରିବା ନାଟକର ବିକାଶ ଓ ସମୃଦ୍ଧିରେ ପ୍ରମୁଖ ଭୂମିକା ଗ୍ରହଣ କରିଚାଲିଛି । ରାଜ୍ୟ ତଥା ରାଜ୍ୟ ବାହାରର ବିଭିନ୍ନ ପ୍ରତିଷ୍ଠିତ ନାଟ୍ୟସଂସ୍ଥା ସହ ଜଡ଼ିତ ରହି ସେ ଓଡ଼ିଆ ନାଟ୍ୟ ସାହିତ୍ୟ ଓ ନାଟ୍ୟକଳାକୁ ଉପରକୁ ଉଠାଇବାକୁ ନିରନ୍ତର ପ୍ରୟାସ ଜାରି ରଖିଛନ୍ତି । ନାଟକର ସହର କଟକରେ ଏହି ନାଟ୍ୟ ପରମ୍ପରାକୁ ନିରନ୍ତର ଓ ନିରବଚ୍ଛିନ୍ନ କରି ଗଢ଼ି ତୋଳିବାରେ ତାଙ୍କ ଭୂମିକା ଅନସ୍ୱୀକାର୍ଯ୍ୟ । ଲୋକନାଟ୍ୟ ଓ ନାଟକ ସଂପର୍କରେ ଆଲୋଚନା ଗ୍ରନ୍ଥ ସଂପାଦନା କରି ଓଡ଼ିଆ ବାଣୀ ଭଣ୍ଡାରକୁ ସମୃଦ୍ଧ କରିଚାଲିଛନ୍ତି ସେ । ନିଷ୍ଠାର ସହ ଲାଗିଥିବେ ତ ଲାଗିଥିବେ, ବିରାମ ନ ଥିବ । ଏଥିପାଇଁ ଶାରୀରିକ ଅସୁସ୍ଥତା ପରି ପ୍ରତିବନ୍ଧକକୁ ସେ କେବେ ଭ୍ରୂକ୍ଷେପ କରି ନାହାନ୍ତି, ବଢ଼ି ଚାଲିଛନ୍ତି ଆଗକୁ... ଆଗକୁ ।

ସାଧନା ପାଇଁ ସ୍ୱୀକୃତି ଓ ସମ୍ମାନ ମିଳିଛି ଏହି ନାଟ୍ୟ-ପ୍ରତିଭାଙ୍କୁ । ୧୯୭୯ ମସିହାରେ ନାଟ୍ୟ-ରଚନା ପାଇଁ କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀ, ନୂଆଦିଲ୍ଲୀ ପକ୍ଷରୁ ଫେଲୋସିପ୍ ପାଇଥିଲେ ସେ । ଏହାପରେ ନାଟକ ପାଇଁ ୧୯୮୫ରେ 'ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର', ୧୯୯୩ରେ 'ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର', ୧୯୯୦ରେ 'ଝଙ୍କାର ପୁରସ୍କାର', ୧୯୯୩ରେ 'ଗଣକବି ବୈଷ୍ଣବପାଣି ପୁରସ୍କାର', ୧୯୯୬ରେ 'ଆଦି ନାଟ୍ୟକାର ପୁରସ୍କାର' ଆଦି ଅନେକ ପୁରସ୍କାରର ଅଧିକାରୀ ହୋଇଛନ୍ତି ସେ । ହିମାଚଳ ପ୍ରଦେଶରୁ 'ବଲ୍‌ରାଜ ସାହାଣୀ ରାଷ୍ଟ୍ରୀୟ ପୁରସ୍କାର', ଉତ୍ତର ପ୍ରଦେଶରୁ 'ଜାତୀୟ ନାଟ୍ୟଶ୍ରୀ ପୁରସ୍କାର', ହରିୟାଣାରୁ 'ଭାରତେନ୍ଦୁ ହରିଶ୍ଚନ୍ଦ୍ର ସମ୍ମାନ', ବିହାରରୁ 'ରାମନାରାୟଣ ପ୍ରସାଦ ଶିଖର ସମ୍ମାନ'ର ବିଜେତା ହୋଇଛନ୍ତି ଶ୍ରୀ ରଥ । 'ନାଟ୍ୟରତ୍ନ'ଠାରୁ 'ନାଟ୍ୟଜ୍ୟୋତି' ଯାଏ ମିଳିଥିବା ଅନେକ ସମ୍ମାନ ପ୍ରମାଣ କରିଛି କାର୍ତ୍ତିକ ଚନ୍ଦ୍ର ରଥଙ୍କ ନିଷ୍ଠା, ତ୍ୟାଗ ଓ ଜୀବନବ୍ୟାପୀ ସାଧନାକୁ । ସାରା ଦେଶ ଏହି ନାଟ୍ୟସ୍ରଷ୍ଟା ଓ ନାଟ୍ୟ ନିର୍ଦ୍ଦେଶକଙ୍କୁ ସ୍ୱୀକୃତି ଦେଇଛି... ସମ୍ବର୍ଦ୍ଧିତ କରିଛି । ଓଡ଼ିଆ ନାଟ୍ୟ-ସାହିତ୍ୟକୁ ସେ କରିଛନ୍ତି ଗୌରବାନ୍ୱିତ... ମଞ୍ଚକଳାକୁ କରିଛନ୍ତି ମହିମାମଣ୍ଡିତ ।

ଅନେକ ଅନୁଷ୍ଠାନ ସହ ସଂପୃକ୍ତ ଶ୍ରୀ ରଥ । ୧୯୬୬ ମସିହାରେ ରେଭେନ୍ସା କଲେଜର ଡ୍ରାମାଟିକ୍ ସେକ୍ରେଟାରୀ, ୧୯୭୯ରେ ଓଡ଼ିଆ ଯୁବ ଲେଖକ ସମ୍ମେଳନର ସଭାପତି, ୧୯୮୦-୮୧ରେ ଉତ୍କଳ ବିଶ୍ୱବିଦ୍ୟାଳୟ ନୃତ୍ୟ, ନାଟକ ଓ ସଂଗୀତ ପାଠ୍ୟକ୍ରମ ବୋର୍ଡ଼ର ସଦସ୍ୟ, ୧୯୮୧-୮୨ରେ ଉଚ୍ଚତର ମାଧ୍ୟମିକ ପରିଷଦ (+୨) ନୃତ୍ୟ, ନାଟକ ଓ ସଂଗୀତ ପାଠ୍ୟକ୍ରମ ବୋର୍ଡ଼ର ସଦସ୍ୟ, ୧୯୮୩ରେ ବମ୍ବେସ୍ଥିତ ଅଲ୍ ଇଣ୍ଡିଆ ଫିଲ୍ମ ଏମ୍ପ୍ଲଇଜ୍ କନ୍‌ଫେଡ଼େରେସନ୍ ସଦସ୍ୟ, ନୂଆଦିଲ୍ଲୀସ୍ଥିତ ନିପା ମାଧ୍ୟମରେ ଇଣ୍ଟରନ୍ୟାସ୍‌ନାଲ୍ ଆମେଚର୍ ଥିଏଟର୍ ଆସୋସିଏସନ୍‌ର ସଦସ୍ୟ, ସଂପ୍ରତି କଟକ ଜିଲ୍ଲା ସଂସ୍କୃତି ପରିଷଦର ସଂଯୋଜକ ଭାବେ କାର୍ଯ୍ୟ କରି ଆସିଛନ୍ତି । ଦେଶ ତଥା ଦେଶ ବାହାରର ବିଭିନ୍ନ ନାଟ୍ୟ-ସଂସ୍ଥା ଏବଂ ସାଂସ୍କୃତିକ ସଂଗଠନ ସହ ତାଙ୍କର ସଂପୃକ୍ତି ତାଙ୍କୁ ଜାତୀୟ ତଥା ଆନ୍ତର୍ଜାତିକ ସ୍ତରରେ ଖ୍ୟାତିସଂପନ୍ନ କରି ପାରିଛି ।

ଜୀବନରେ ଅନେକ ସଫଳତା ଓ ସାର୍ଥକତା ଲାଭ କରିଛନ୍ତି କାର୍ତ୍ତିକ ଚନ୍ଦ୍ର । କଟକରେ ଏକ ଉନ୍ନତମାନର ରୁଚିସଂପନ୍ନ ରଙ୍ଗାଳୟ ତଥା ମୁକ୍ତାକାଶ ରଙ୍ଗମଞ୍ଚ ପ୍ରତିଷ୍ଠା କରିବାର ସ୍ୱପ୍ନ ଦେଖୁଛନ୍ତି ସେ । ଦର୍ଶକଙ୍କ ପାଇଁ ନାଟକ ଅଭିନୀତ ହେଉଥିବ, ନାଟକ ଭିତରେ ସେ ମନପ୍ରାଣ ଢାଳି ଚାଲିଥିବେ– ଏପରି ଭାବନା ନେଇ କଟାଇ ଚାଲିଛନ୍ତି ସେ ନିଜର ସାଂସ୍କୃତିକ ଜୀବନ । ସେଥିପାଇଁ କେତେବେଳେ ରାତି ପାହେ, କେତେବେଳେ ସଂଜ ନଇଁ ଆସେ ସେ ଜାଣି ପାରନ୍ତି ନାହିଁ । ବିଳମ୍ବିତ ରାତିରେ ଇଣ୍ଟରନେଟ୍ ମାଧ୍ୟମରେ ବିଶ୍ୱର ବିଭିନ୍ନ ଦେଶରେ ରହୁଥିବା କଳାକାର, ନାଟ୍ୟକାର ତଥା ନାଟ୍ୟସଂସ୍ଥାଙ୍କ ସହ ସଂପର୍କର ଖିଅ ଯୋଡ଼ି ଚାଲିଥିବେ... ଏତେ ବଡ଼ ମହୋତ୍ସବର ଲକ୍ଷ୍ୟ ହାସଲ ପାଇଁ ଅନବରତ ଚାଲିଥିବ ସାଧନା । ନିଷ୍ପାପର ନିରନ୍ତର ଉଦ୍ୟମ ବୃଥା ଯାଏନା, ତାହା କାର୍ତ୍ତିକ ରଥଙ୍କ ଜୀବନର ମର୍ମବାଣୀ । କର୍ମମୟ ଜୀବନରେ ଶୁଭୁଥାଏ କର୍ମର କୂଳୁନାଦ... ସମସ୍ତଙ୍କୁ ସାଥିରେ ନେଇ ଆଗକୁ ବଢ଼ିବାର ମନ୍ତ୍ରଧ୍ୱନି ।

ନାଟ୍ୟକାର କାର୍ତ୍ତିକ ଚନ୍ଦ୍ର ରଚନା କରିଥିଲେ 'ଈଶ୍ୱର ଜଣେ ଯୁବକ'। ଯେତେବେଳେ ଶ୍ରୀ ରଥଙ୍କ କାର୍ଯ୍ୟଶୈଳୀକୁ ବିଚାର କରାଯାଏ, ସେତେବେଳେ ତାଙ୍କ କାର୍ଯ୍ୟ କରିବାର ଉଦ୍ଦାମତା ପ୍ରମାଣ ଦିଏ– ସେ ମଧ୍ୟ ଜଣେ ଯୁବକ ! ଆଖିରେ ଅୟୁତ ସ୍ୱପ୍ନ ଏବଂ ତାକୁ ସାକାର କରିବାରେ ଲାଗି ପଡ଼ିଛନ୍ତି ସେ । ବୟସ ଓ ପ୍ରତିକୂଳ ପରିସ୍ଥିତି ହାର୍ ମାନିଚି ତାଙ୍କ ନିକଟରେ ।



## ନମସ୍ୟ ସ୍ରଷ୍ଟା
# ନନ୍ଦକିଶୋର ସିଂହ

ଭୁବନମୋହନ ମହାନ୍ତି
ଦୟାନିଧି ନାୟକ

ଶଂଖପାରୀ ଗାଆଁଟି କୋରେଇ ଗାଆଁର ଏକ ଛୋଟ ବସ୍ତି । ରାଜସ୍ୱ ବିଭାଗରେ କୋରେଇର ନାମ ନାହିଁ । ସାଦକପୁର ଓ ଫାଜଲପୁର ଦୁଇ ବଡ଼ ମୌଜାର ମିଳନ ହିଁ କୋରେଇ ଗାଆଁ । ତେବେ ଗ୍ରାମର ମଝାମଝି ଗ୍ରାମଦେବତୀ କୋରେଇ ବୁଢ଼ୀ ବିଦ୍ୟମାନ । ସମ୍ଭବତଃ ତାଙ୍କର ନାମ ଅନୁସାରେ ଏହି ଗାଆଁଟିକୁ କୋରେଇ କୁହାଯାଏ ।

କେହି କେହି ବ୍ୟକ୍ତି କହନ୍ତି ଏହି ଗାଆଁରେ କୋରେଇ (କୁରେଇ) ଗଛ ଯଥେଷ୍ଟ ଥିଲା । ଏଣୁ ଏ ଗାଆଁର ନାମ କୋରୋଇ ।

ଶଂଖପାରୀ ଗାଆଁର ନାମକରଣର କାରଣ ଏକ ଶଂଖ (ପୋଲ) ପାରି ହେଲେ ଏ ଗାଆଁ ପଡ଼େ । ଏହି ଗାଁରେ ୧୩୪୭ ସାଲ ବୈଶାଖ ଶୁକ୍ଳ ଦ୍ୱିତୀୟାରେ ଭୂମିଷ୍ଠ ହୋଇଥିଲେ ନନ୍ଦକିଶୋର ସିଂହ । କିନ୍ତୁ ହାଇସ୍କୁଲ ସାର୍ଟିଫିକେଟ୍ ଅନୁସାରେ ତାଙ୍କର ଜନ୍ମ- ୧୫।୫।୪୨ ମସିହା । ଶ୍ରୀଯୁକ୍ତ ନନ୍ଦକିଶୋର ସିଂହ ଓଡ଼ିଶାର ଜଣେ ଅଗ୍ରଗଣ୍ୟ ସ୍ରଷ୍ଟା । ଏକାଧାରାରେ ଜଣେ ଗୀତିକବି, ନାଟ୍ୟକାର, ଶିଶୁସାହିତ୍ୟିକ, ନାଟ୍ୟଶିଳ୍ପୀ, ପ୍ରାବନ୍ଧିକ ଏବଂ ସମ୍ପାଦକ ଭାବରେ ପ୍ରତିଷ୍ଠା ଲାଭ କରିଥିବା ଶ୍ରୀଯୁକ୍ତ ସିଂହ ବହୁ ଯଶ ଓ ସମ୍ମାନର ଅଧିକାରୀ । ଶିଶୁ ସାହିତ୍ୟିକ ଭାବରେ ତାଙ୍କର ବେଶ୍ ସୁନାମ ରହିଛି । ଏ କ୍ଷେତ୍ରରେ ସେ ଅଶେଷ ସଫଳତା ହାସଲ କରିଛନ୍ତି । ବୃତ୍ତିଗତ ଜୀବନରେ ଶ୍ରୀଯୁକ୍ତ ସିଂହ ଜଣେ ଶିକ୍ଷକ । ଶିକ୍ଷକତା ସମୟରେ ବହୁବର୍ଷ ଧରି ଶିଶୁମାନଙ୍କର ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଛନ୍ତି । ପିଲାମାନଙ୍କର ଆଚାର ବ୍ୟବହାର, ରାଗରଷା ଓ ଭଲମନ୍ଦ ସହିତ ପରିଚିତ ହୋଇଛନ୍ତି । ଶିକ୍ଷକତା ସମୟରେ

ଶିଶୁମାନଙ୍କୁ ଶିକ୍ଷାକ୍ଷେତ୍ରରେ ସଫଳତା ପାଇଁ ଯେଉଁ ପ୍ରକାର ଶିକ୍ଷା ଓ ଦିଗ୍‌ଦର୍ଶନ ପ୍ରଦାନ କରିଛନ୍ତି, ସେମାନଙ୍କ ମନୋରଞ୍ଜନ ତଥା ମାନସିକ ବିକାଶ ପାଇଁ ସେ ସେହିପରି ସଫଳ ଶିଶୁସାହିତ୍ୟ ସୃଷ୍ଟି କରି ଲୋକପ୍ରିୟତା ହାସଲ କରିଛନ୍ତି ।

ଜଣେ ଗୀତିକବି ଭାବରେ ନନ୍ଦକିଶୋର ମଧ୍ୟ ବେଶ୍ ସମୃଦ୍ଧ । ଷଷ୍ଠ ଦଶକରେ ଆକାଶବାଣୀ ମାଧ୍ୟମରେ ଯେଉଁ କେତେ ଜଣ ଗୀତିକାର ଓଡ଼ିଆ ଗୀତିକବିତା ଜଗତକୁ ସୁସମୃଦ୍ଧ ତଥା ଲୋକାଭିମୁଖୀ କରିପାରିଛନ୍ତି, ସେମାନଙ୍କ ମଧ୍ୟରେ ଗୀତିକାର ନନ୍ଦକିଶୋର ସିଂହ ଅନ୍ୟତମ । ୧୯୫୨ ମସିହାରୁ କବିତା ରଚନା ଆରମ୍ଭ କରିଥିଲେ ମଧ୍ୟ ୧୯୬୩ ମସିହାରୁ ଆକାଶବାଣୀର ଗୀତିକାର ରୂପେ ସେ ସ୍ୱୀକୃତି ପାଇଲେ । ସହସ୍ରାଧିକ ଗୀତର ସେ ରଚୟିତା । ଏହି ଗୀତଗୁଡ଼ିକ ପୁସ୍ତକ ଆକାରରେ ସଂକଳିତ ହୋଇ ତାଙ୍କୁ ବହୁ ଯଶ ଓ ସମ୍ମାନ ଆଣିଦେଇଛି । ଗୀତିକବିତା ପାଇଁ ସେ ପାଇଛନ୍ତି 'ସାହିତ୍ୟ ଏକାଡ଼େମୀ ପୁରସ୍କାର' । ଜଣେ ନାଟ୍ୟଶିଳ୍ପୀ ଭାବରେ ପରିଚିତ ନନ୍ଦକିଶୋର ବହୁବେତାର ନାଟକରେ ଅଭିନୟ କରି ପ୍ରଶଂସିତ ହୋଇଛନ୍ତି । ଏହା ସହିତ ନାଟକ ରଚନା କ୍ଷେତ୍ରରେ ସେ ପାଇଛନ୍ତି, ବହୁ ପ୍ରଶଂସା ଓ ସମ୍ମାନ । ତାଙ୍କ ରଚିତ ବହୁନାଟକ ଆକାଶବାଣୀ ଓ ଦୂରଦର୍ଶନ ଏବଂ ମଞ୍ଚରେ ଅଭିନୀତ ହୋଇ ଅପୂର୍ବ ସଫଳତା ଓ ଲୋକପ୍ରିୟତା ହାସଲ କରିଛି । ଏହା ବ୍ୟତୀତ ତାଙ୍କ ରଚିତ ବହୁ ରୂପକ, ଏକାଙ୍କିକା, ଆକାଶବାଣୀ ଓ ବିଦ୍ୟାଳୟ ପରିସରରେ ଅଭିନୀତ ହୋଇଛି ।

ଜଣେ ପ୍ରାବନ୍ଧିକ ଭାବରେ ମଧ୍ୟ ନନ୍ଦକିଶୋରଙ୍କର ପରିଚୟ ରହିଛି । ତାଙ୍କ ରଚିତ ବହୁ ସାହିତ୍ୟିକ ଏବଂ ସମସ୍ୟାମୂଳକ ପ୍ରବନ୍ଧ ପତ୍ରପତ୍ରିକାରେ ପ୍ରକାଶିତ ହୋଇଛି ଏବଂ ପରବର୍ତ୍ତୀ ସମୟରେ ପୁସ୍ତକ ଆକାରରେ ପ୍ରକାଶିତ ହୋଇଛି ।

କବିତା ଓ ଗୀତିକବିତା ବ୍ୟତୀତ ନନ୍ଦକିଶୋର ରଚନା କରିଛନ୍ତି ଅନେକ କ୍ଷୁଦ୍ରକବିତା । ଏହି କ୍ଷୁଦ୍ରକବିତାଗୁଡ଼ିକ ବୌଦ୍ଧିକତା ଏବଂ କାବ୍ୟିକତା ଉଭୟ ଦୃଷ୍ଟିରୁ ଅନନ୍ୟ । ପଲ୍ଲୀଗୀତିରଚନାରେ ଅପୂର୍ବ ସଫଳତା ହାସଲ କରିଥିବା ନନ୍ଦକିଶୋର ପଲ୍ଲୀ ସଂସ୍କୃତି ସହିତ ସହରୀ ପାଠକମାନଙ୍କୁ ପରିଚିତ କରାଇବା ପାଇଁ ନିୟମିତ ଭାବରେ ପ୍ରକାଶ କରୁଛନ୍ତି ତ୍ରୈମାସିକ ସାହିତ୍ୟ ପତ୍ରିକା 'ବୋଲେ ହୁଁଟି' । ପୁଣି ନନ୍ଦକିଶୋର ଜଣେ ସ୍ତମ୍ଭକାର ଭାବରେ ପରିଚିତ ହୋଇଛନ୍ତି । ବିଭିନ୍ନ ସମୟରେ କାଳାନ୍ତର, ଖୋଲାଦ୍ୱାର, ଧ୍ୱନି-ପ୍ରତିଧ୍ୱନି, ପ୍ରଜାତନ୍ତ୍ର ପ୍ରଭୃତି ପତ୍ରପତ୍ରିକାରେ ସ୍ତମ୍ଭରଚନା କରି ସେ ନିଜ ସୃଜନକଳାର ଆଉ ଗୋଟିଏ ଦିଗ ଉନ୍ମୋଚନ କରିଛନ୍ତି । ବାସ୍ତବିକ୍ ବିଭିନ୍ନ ଦିଗଦିଗନ୍ତକୁ ସ୍ପର୍ଶ କରିଛି ନନ୍ଦକିଶୋରଙ୍କ ସୃଜନ ପ୍ରତିଭା । କିନ୍ତୁ ମୁଖ୍ୟତଃ ସେ ସାହିତ୍ୟ ଜଗତରେ ଜଣେ ଶିଶୁସାହିତ୍ୟିକ ଏବଂ ଗୀତିକବି ରୂପେ ଅଧିକ ପରିଚିତି, ପ୍ରଶଂସା ଓ ପ୍ରତିଷ୍ଠା ଲାଭ କରିଛନ୍ତି ।

ନନ୍ଦ କିଶୋର ପିଲାବେଳୁ ଥିଲେ ଦୁର୍ବଳ ସ୍ୱାସ୍ଥ୍ୟର । ପ୍ରାୟ ରୋଗରେ ପଡୁଥାନ୍ତି । ବିଶେଷତଃ ପେଟରୋଗ ତାଙ୍କର ଚିର ସହଚର । ୨ୟ ଶ୍ରେଣୀରେ ପଢୁଥିବାବେଳୁ ଏହି ପେଟମରା ଯନ୍ତ୍ରଣା । ଥରେ ଥରେ ପେଟ ଯନ୍ତ୍ରଣାରୁ ସାଦକପୁର ନି.ପ୍ରା. ସ୍କୁଲ ଛୁଟି ହେବା ଆଗରୁ ସେ ପଳେଇଆସନ୍ତି । ସେତେବେଳେ ତାଙ୍କ ପାଇଁ ଜୁଆଣି ଅର୍କ ଏକମାତ୍ର ଫଳପ୍ରଦ ଔଷଧ ଥିଲା । ତଥାପି ଗାଆଁ ପିଲାଙ୍କ ସାଙ୍ଗରେ ଗାଆଁ ଦାଣ୍ଡରେ କଉଡ଼ି, ପୁଆଦଣ୍ଡା ଖେଳିବା, ଆମ୍ବତୋଟାକୁ ଯାଇ ଆମ୍ବ ସାଉଁଟିବା, ଅଗି ପୁନେଇଁରେ କିଆବୁଦା ପୋଡ଼ିବାରେ ବେଶ୍ ଆଗୁଆ ଥିଲେ ନନ୍ଦକିଶୋର ।

ପିଲାଦିନ କଥା ମନେପକାଇ ନନ୍ଦବାବୁ କୁହନ୍ତି, ବିଦ୍ୟାଳୟର ନୀଳମଣି ସାର୍ ପିଲାଙ୍କୁ ହସେଇ ହସେଇ ଖୁବ୍ ଭଲ ପଢ଼ାନ୍ତି । ଅଥଚ ସ୍କୁଲର ହେଡ଼ପଣ୍ଡିତ କାଳିଆମାଷ୍ଟ୍ରେ (କାଳନ୍ଦୀପ୍ରସାଦ ତିୱାରୀ) ଖୁବ୍ ବଦରାଗୀ । ଆମକୁ ସାମାନ୍ୟ ସାମାନ୍ୟ ଭୁଲ୍‌ପାଇଁ ଖୁବ୍ ମାଡ଼ିଦିଅନ୍ତି । ଏଣୁ ତାଙ୍କୁ ଆମେ ଭକ୍ତି ଅପେକ୍ଷା ବେଶୀ ଭୟକରୁ । ଏହି ବିଦ୍ୟାଳୟରେ ପଢୁଥିବା ବେଳେ ଭାରତ ସ୍ୱାଧୀନ ହେଲା । ସ୍ୱାଧୀନତା ଦିବସ ପାଳନର ଉତ୍ସବ ମୋର ଭଲଭାବେ ମନେଅଛି । 'ଭାରତ ମାତାକୀ ଜୟ', 'ମହାତ୍ମା ଗାନ୍ଧୀକି ଜୟ' ସ୍ଲୋଗାନ୍ ଏବେବି ମନେପଡୁଛି ।

ଏହି ବିଦ୍ୟାଳୟରୁ ମୁଁ ବୃତ୍ତିପରୀକ୍ଷା ଦେବାକୁ ଯାଜପୁର ହାଇସ୍କୁଲ ଯାଇଥିଲି । ମୋ ସହ ସହପାଠୀ ଗଜେନ୍ଦ୍ର ମିଶ୍ର ମଧ୍ୟ ଯାଇଥିଲା । ହେଲେ ଆମେ ଦୁହେଁ ସପ୍ତମ ଶ୍ରେଣୀ ବୃତ୍ତିପରୀକ୍ଷାରେ ସଫଳତା ପାଇଲୁ ନାହିଁ । ତେବେ ପ୍ରଥମ ଶ୍ରେଣୀରୁ ଏକାଦଶ ଶ୍ରେଣୀ ଯାଏ ମୁଁ ପ୍ରାୟତଃ ଶ୍ରେଣୀରେ ପ୍ରଥମ ହେଉଥିଲି । ତେଣୁ ସବୁ ଶିକ୍ଷକଙ୍କ ମୁଁ ଥିଲି ପ୍ରିୟଛାତ୍ର ।

ପ୍ରାଥମିକ ବିଦ୍ୟାଳୟର କାଳିନ୍ଦୀପ୍ରସାଦ ତିୱାରି, ନୀଳମଣି ସାହୁ ମାଇନର ସ୍କୁଲରେ କୃଷ୍ଣଚନ୍ଦ୍ର ସାହୁ, ଶ୍ୟାମ ସୁନ୍ଦର ପାତ୍ର, ହରିହର ମିଶ୍ର, ମହେଶ୍ୱର ପାଣିଗ୍ରାହୀ ହାଇସ୍କୁଲର କୁଣ୍ଡଳ ଆଦି ନାରାୟଣ ରାଓ, ଉପେନ୍ଦ୍ର ଶତପଥି, ଲକ୍ଷ୍ମୀଧର ନାୟକ, ଗୋପୀନାଥ ରାଉତ, ଅଚ୍ୟୁତାନନ୍ଦ ପତି, ମୁକୁନ୍ଦ ପ୍ରସାଦ ପଣ୍ଡା, ଅନନ୍ତ ଚରଣ ପତି, ପଣ୍ଡିତ ମହାଶୟଙ୍କ କଥା ଏବେବି ମନେପଡ଼େ । ମନେପଡୁଛି ସେମାନଙ୍କ ଶ୍ରଦ୍ଧା ଓ ପାଠପଢ଼ିବାପାଇଁ ଅଧିକରୁ ଅଧିକ ସ୍ନେହ ଓ ଉପଦେଶ ଦେବା କଥା ।

ଏନ୍.ସି. ହାଇସ୍କୁଲ ଯାଜପୁରରୋଡ଼ରେ ମୋର ଛାତ୍ର ଜୀବନ ୧୯୫୪ ରୁ ୧୯୫୮ । ଏହି ୪ ବର୍ଷ ମୁଁ ଖୁବ୍ ଆନନ୍ଦରେ ଏବଂ ଶିକ୍ଷକଙ୍କ ପ୍ରିୟଛାତ୍ର ଭାବେ କାଳ କାଟିଥିଲି । ଶ୍ରେଣୀରେ ପ୍ରଥମ ହେଉଥିବା ଯୋଗୁଁ ସମସ୍ତେ ଭଲ ପାଉଥିଲେ । ମୁଁ ମଧ୍ୟ ଶ୍ରେଣୀରେ ମନିଟର ଥିଲି । ପତ୍ରିକା ଏବଂ କମନ୍‌ରୁମ୍ ଦାୟିତ୍ୱରେ ଆଉ ଛାତ୍ରଛାତ୍ରୀଙ୍କ

ପତ୍ରପତ୍ରିକା ପଢ଼ିବାରେ ତୀକ୍ଷ୍ଣ ଦୃଷ୍ଟି ଦେଉଥିଲି । ସାଂସ୍କୃତିକ ଉତ୍ସବରେ ଅଭିନୟ କରୁଥିଲି । ବ୍ୟାସ ସରୋବର ମେଳାରେ ଶୃଙ୍ଖଳା ରଖିବାର ନେତୃତ୍ୱ ନେଉଥିଲି । ଏହି ବିଦ୍ୟାଳୟରୁ ମୁଁ ମଧ୍ୟ ପ୍ରଥମ ଶ୍ରେଣୀରେ ମ୍ୟାଟ୍ରିକ୍ ପାଶ୍ କରିଥିଲି ।

ଏହି ହାଇସ୍କୁଲ ଜୀବନରେ ମୁଁ ମୀନାମଣ୍ଡଳୀର ନାୟକ ହୋଇଥିଲି । ମୀନାମଣ୍ଡଳୀ ନାଆଁ ହେଲା 'ଉନ୍ମେଷ' । ମୀନାବଜାର ପାଇଁ ଲେଖାଲେଖି କରିବା, ଲେଖା ପ୍ରକାଶ ପାଇବା ଏବଂ ଅନ୍ୟ ସଭ୍ୟସଭ୍ୟାଙ୍କ ଲେଖା ପ୍ରକାଶ ପାଇଁ ଉଦ୍ୟମ କରିବାରେ ମୋର ଆତ୍ମସନ୍ତୋଷ ଥିଲା । ମୋଟ ଉପରେ ଲେଖାଲେଖି କରିବାର ମୂଳଦୁଆ ଏହିଠାରୁ ଆରମ୍ଭ ହୋଇଥିଲା । ଅବଶ୍ୟ ମାଇନର ସ୍କୁଲରେ ପଢୁଥିବା ବେଳେ ୬ଷ୍ଠ ଓ ୭ମ ଶ୍ରେଣୀରେ ମଧ୍ୟ ଛୋଟ ଛୋଟ କବିତା ଲେଖୁଥିଲି । ବକ୍ତୃତା ମଧ୍ୟ ଦେଉଥିଲି । ଅଭିନୟ କରୁଥିଲି ।

ହାଇସ୍କୁଲରେ ଲେଖା ଲେଖିରେ ଏବଂ ଅଭିନୟରେ ପ୍ରେରଣା ଯୋଗାଇଥିଲେ ମୋର ଗୁରୁ ଅଚ୍ୟୁତାନନ୍ଦ ପତି । ସେ ମଧ୍ୟ ଜଣେ ପରବର୍ତ୍ତୀ ଜୀବନରେ ବିଶିଷ୍ଟ ଗାଳ୍ପିକ ଭାବେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ସର୍ବୋଚ୍ଚ ପୁରସ୍କାର 'ଅତିବଡ଼ି ଜଗନ୍ନାଥ ଦାସ' ପୁରସ୍କାର ପାଇଛନ୍ତି ।

ମୋଟ ଉପରେ ସ୍କୁଲଜୀବନ ବେଶ୍ ମଧୁର, ସ୍ମୃତିବହୁଳ ଏବଂ ଖ୍ୟାତିସମ୍ପନ୍ନ ଥିଲା । ଏକମାତ୍ର ସହପାଠିନୀ କ୍ଷେତ୍ରମଣିଙ୍କ ଅକାଳ ବିୟୋଗ କଥା ମଧ୍ୟ ମନକୁ ଆସେ ।

**କଲେଜ ଜୀବନ ଓ ଚାକିରି ଜୀବନ :** ନିଜର କଲେଜ ଓ ଚାକିରି ଜୀବନ ବିଷୟରେ ନନ୍ଦକିଶୋର କୁହନ୍ତି– 'ମେଟ୍ରିକ୍ ପରୀକ୍ଷାଫଳ ପ୍ରକାଶ ପରେ ପରେ ମୋର ବିବାହ ମାତ୍ର ୧୭/୧୮ ବର୍ଷ ବୟସରେ ହୋଇଥିଲା । ଏଣୁ ମୁଁ ସଦାସର୍ବଦା କହେ ଯୌବନର ଜନ୍ମ ପୂର୍ବରୁ ମୋର ବିବାହ ମୋତେ ଏକ ଦୁଃଖଦ ପରିବେଶ ଭିତରେ ସଂସାର ବୋଝ ମୁଣ୍ଡେଇବାକୁ ବାଧ୍ୟ କଲା । ଫଳରେ ଦାମ୍ପତ୍ୟ ଜୀବନରେ ସୁଖ ମୋ ଭାଗ୍ୟରେ କମ୍ ଥିଲା । ଏକ ବିବାହିତ ଯୁବକ ଭାବେ ଭଦ୍ରକ କଲେଜରେ ଆଇ.ଏସ୍.ସି. ପଢ଼ିଲି । ବିଜ୍ଞାନ ପାଠ ମୋତେ ଭଲ ଲାଗିଲା ନାହିଁ । ଭଲ ଛାତ୍ର ହେଲିନି କିମ୍ବା ଭଲ ସ୍ୱାମୀ ବି ହେଲିନି । ସଂସାର ପ୍ରତି ବିମୁଖତା ବଢ଼ିଲା । ତେଣେ କଲେଜରେ ମଧ୍ୟ କୌଣସି ଭଲକାମରେ ପ୍ରତିନିଧିତ୍ୱ କରିପାରିଲି ନାହିଁ ।'

ଏହି ଜୀବନରେ ଏକମାତ୍ର ଆଶ୍ୱାସନା ଥିଲା ମୋର ବାଲ୍ୟବନ୍ଧୁ କଲା (ହଜାରୀ ଅବଦୁଲ୍‌ବାରୀ) । ସେ ଓ ମୁଁ ଏକାଠି ରହୁଥିଲୁ ଗାଉଁଲୀ ମେସ୍‌ରେ । ଆଇ.ଏସ୍.ସିର ପ୍ରଥମବର୍ଷ ପଦାର୍ଥ ବିଜ୍ଞାନରେ ଖୁବ୍ ଖରାପ କରି ଆତ୍ମହତ୍ୟା କରିବାକୁ ଉଦ୍ୟମ କରିଥିଲି । ହେଲେ ବନ୍ଧୁ କାଲା ପାଇଁ ତାହା ସମ୍ଭବ ହୋଇ ନ ଥିଲା । ରାତିସାରା ସେ ପ୍ରାୟ ମୋତେ ଜଗି ରହିଥିଲା । ତଥାପି ଏହି କଲେଜ ନିର୍ବାଚନରେ ଭାଗ ନେଇ ହାରିଥିଲି । କିନ୍ତୁ

ଆଇ.ଏସ୍.ସି. ଶେଷ ପରୀକ୍ଷାରେ ଅପେକ୍ଷାକୃତ ଭଲକରି ଉଚ୍ଚତର ୨ୟ ଶ୍ରେଣୀରେ ପାଶ୍ କରି କିଛିଟା ଆଶ୍ୱସ୍ତ ହୋଇଥିଲି । ଏହି ପାଠପଢ଼ା ସମୟରେ ଆଗରୁ ଶ୍ୱଶୁର ଘରର ଆର୍ଥିକ ସାହାଯ୍ୟ ଏବଂ ମୁଁ ପାଉଥିବା ବୃତ୍ତିରୁ (Scholarship) କିଛିଟା ଆର୍ଥିକ ନିଅଣ୍ଟକୁ ଭରଣା କରୁଥିଲି ।

କିନ୍ତୁ ପରେ ଶ୍ୱଶୁର ଆଉ ଟଙ୍କାଟିଏ ଦେଇପାରିବେନି ବୋଲି ମନାକଲେ । ଏଣୁ ମୋର ଆଇ.ଏସ୍‌ସି. ପରେ ଡାକ୍ତରୀ, ଇଞ୍ଜିନିୟରିଂ ଏପରିକି ପଶୁଡାକ୍ତରୀ ପଢ଼ିବାର ସପ୍ନ ମଉଳି ଗଲା । ବାଧ ହୋଇ ଚାକିରି କଲି । ସର୍ବ ପ୍ରଥମେ ନୂଆ କରି ଖୋଲିଥିବା ରୁଦ୍ରଚରଣ ହାଇସ୍କୁଲ, ସୁଜନପୁରରେ ବିଜ୍ଞାନ ଶିକ୍ଷକ ଭାବେ ଯୋଗଦେଲି । ମାସିକ ଦରମା ଥିଲା ୮୦ (ଅଶୀ) ଟଙ୍କା । ଏହା ବୋଧେ ୧୯୬୦ ମସିହାର ଅଗଷ୍ଟ/ସେପ୍ଟେମ୍ବର କଥା । ଏହି ବିଦ୍ୟାଳୟରେ ୧୯୬୦ ରୁ ୧୯୬୪ ମସିହା ଯାଏ ଶିକ୍ଷକତା କଲି । ଏହାରି ଭିତରେ ଘରୋଇ ଭାବରେ ପ୍ରସ୍ତୁତ ହୋଇ ବି.ଏ.ପାଶ୍ କଲି ଭଦ୍ରକ କଲେଜରୁ । ଜଣେ ଉତ୍ତମ ଛାତ୍ରବତ୍ସଳ ଶିକ୍ଷକ ଭାବେ ଏଠାରେ ମୁଁ ଖୁବ୍ ଲୋକପ୍ରିୟ ମଧ୍ୟ ଥିଲି । ଉଭୟ ଇଂରେଜୀ ଓ ଅଙ୍କ ତଥା ବିଜ୍ଞାନ ଏବଂ ଓଡ଼ିଆ ପଦ୍ୟସାହିତ୍ୟ ଶିକ୍ଷାଦାନରେ ଛାତ୍ରଛାତ୍ରୀ ବେଶ ସୁଖୀଥିଲେ । ଏଠାରେ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ, ନାଟ୍ୟାଭିନୟରେ ମଧ୍ୟ ଅଂଶଗ୍ରହଣ କରୁଥିଲି । ସର୍ବପ୍ରଥମେ ମଞ୍ଚ ନାଟକ 'ଜନନୀ'ରେ ଏଠାରେ ମୁଁ ଅଭିନୟ କଲି ଛୋଟା ରମାନାଥ ଭୂମିକାରେ । ଏହିଠାରେ ଚାକିରି କାଳ ଭିତରେ ମୁଁ ବେତାର କେନ୍ଦ୍ର କଟକରୁ ଜଣେ ସୌଖିନ ନାଟ୍ୟକାର, ନାଟ୍ୟଶିଳ୍ପୀ ତଥା ଗୀତିକାର ହେବାର ସୌଭାଗ୍ୟ ଲାଭ କଲି । ଏ କ୍ଷେତ୍ରରେ ସୁଜନପୁର ହାଇସ୍କୁଲର ପ୍ରଧାନ ଶିକ୍ଷକ ସୁରେନ୍ଦ୍ର ନାଥ ରାଉତଙ୍କ ପ୍ରେରଣା ଓ ସ୍ନେହ ଅବଶ୍ୟ ସ୍ମରଣୀୟ ।

ଏହାପରେ ରାଧାନାଥ ଟ୍ରେନିଂ କଲେଜରେ ବି.ଇଡ଼ି. ଟ୍ରେନିଂ ନେଲି । ୧୯୬୫-୬୬ ଶିକ୍ଷାବର୍ଷରେ ଏହି ଟ୍ରେନିଂ ଜୀବନ ଖୁବ୍ ଆନନ୍ଦଦାୟକ ଥିଲା । ଏଠାରେ ମୁଁ ପତ୍ରିକା (କ୍ଷଣିକା)ର ସମ୍ପାଦନା ଦାୟିତ୍ୱ ସାଙ୍ଗକୁ କେତୋଟି ଏକାଙ୍କିକାରେ ଅଭିନୟ ମଧ୍ୟ କରିଥିଲି । ଅଧ୍ୟକ୍ଷ ବୈଦ୍ୟନାଥ ରଥ ମୋତେ ଶ୍ରଦ୍ଧା କରୁଥିଲେ । ମୋର ଟ୍ରେନିଂ ଜୀବନର ବନ୍ଧୁବାନ୍ଧବୀମାନଙ୍କ ଭିତରେ କାଳୀ ପ୍ରସନ୍ନ, ଅଶୋକ ବୈକୁଣ୍ଠନାଥ ପତି, ମଧୁସୂଦନ ଦାସ, କୃଷ୍ଣଚନ୍ଦ୍ର ମହାପାତ୍ର, ପଦ୍ମା ରାଉତ, ମୀରା ଭୌମିକ୍, କିଶୋର ରଥ, ଶୈଳବାଳା ମହାପାତ୍ର, ରମଣୀରଞ୍ଜନ ଆଦିଙ୍କ ସହ ହସ ଖୁସି ଥଟ୍ଟା ମଜା ରାଗ ରୁଷା କଥା ଏବେବି ମନେ ଅଛି ।

ଅଧ୍ୟାପକ ଭୋଳାନାଥ ମିଶ୍ରଙ୍କ ଭୋଳାପଣ, ମଦନ ମୋହନ ମିଶ୍ରଙ୍କ ଇତିହାସ ଶିକ୍ଷାଦାନ ସାଙ୍ଗକୁ କିଶୋର ଚନ୍ଦ୍ର ଦାଶ ଏବଂ କେଶବଚନ୍ଦ୍ର ପତିଙ୍କ ଆନ୍ତରିକତା ବେଶ୍ ହୃଦୟଗ୍ରାହୀ ।

ଏହି ବି.ଇଡ଼ି. ଟ୍ରେନିଂ ସମୟରେ ମୁଁ ଆକାଶବାଣୀ କଟକ କେନ୍ଦ୍ର ସହ ଅଧିକ ସମ୍ପର୍କିତ ହୋଇଥିଲି । ବିଶେଷତଃ ଇଂରେଜୀ ଓ ହିନ୍ଦୀ ରୂପକଗୁଡ଼ିକ ଓଡ଼ିଆ ଅନୁବାଦ କରି କିଛି ଅର୍ଥ ମଧ୍ୟ ଉପାର୍ଜନ କରୁଥିଲି । ତେବେ ଏହି ସମୟରେ ଅନୁବାଦ କାମ ନ କରି ନାଟ୍ୟଶିଳ୍ପୀ ଭାବେ ଅଭିନୟ କରିବାର ସୁଯୋଗ ପାଇଥିଲେ ମୁଁ ଅଧିକ ଆତ୍ମସନ୍ତୋଷ ଲାଭ କରିଥାନ୍ତି ।

ବି.ଇଡ଼ି. ପରେ ରାଧାନାଥ ଟ୍ରେନିଂ କଲେଜରେ ଅଧକ୍ଷ ଚାହୁଁଥିଲେ ମୁଁ କଟକରେ କୌଣସି ସ୍କୁଲରେ ଚାକିରି କରେ । ମୁଁ କିନ୍ତୁ ଫେରି ଆସିଥିଲି ପୁନଶ୍ଚ ରୁଦ୍ରଚରଣ ହାଇସ୍କୁଲକୁ କାର୍ଯ୍ୟରେ ଯୋଗଦେବାପାଇଁ । କିନ୍ତୁ ଏଥର ରୁଦ୍ରଚରଣ ହାଇସ୍କୁଲର ବାତାବରଣ ଆଉ ମୋ'ପାଇଁ ଅନୁକୂଳ ନ ଥିଲା । ମାସକ ଭିତରେ ପ୍ରସ୍ତାବିତ ବ୍ରାହ୍ମଣୀଦେବୀ ହାଇସ୍କୁଲରେ ପ୍ରଧାନଶିକ୍ଷକ ଭାବେ ଯୋଗଦେଲି । ମାତ୍ର ଘରୋଇ ବିଦ୍ୟାଳୟର ଚାକିରି କରିବାକୁ ଆଉ ଇଚ୍ଛା ନ ଥିଲା । ଏଣୁ ପୁନଶ୍ଚ ମୋର ଶୁଭେଚ୍ଛୁ ଅଧ୍ୟାପକ ଟ୍ରେନିଂ କଲେଜ ଅଧକ୍ଷ ବୈଦ୍ୟନାଥ ରଥଙ୍କ କରୁଣାରୁ ମୁଁ ଏକ ସରକାରୀ ହାଇସ୍କୁଲ ବି.ଏନ୍ ବିଦ୍ୟାପୀଠ, ଆଠଗଡ଼ରେ ସହକାରୀ ଶିକ୍ଷକଭାବେ ଯୋଗଦେଲି ।

ଏହି ବିଦ୍ୟାଳୟରେ ତା ୨୭.୧୦.୬୭ ରିଖରେ ଯୋଗଦେଇ ୨୯.୫.୬୮ ରେ ବଦଳି ହେଲି । ମାତ୍ର ୬/୭ ମାସ ଏଠାରେ ରହଣି, ତେବେ ଏହି ରହଣି ସମୟରେ ମୁଁ ବେଶ୍ ଛାତ୍ରବତ୍ସଳ ହୋଇଥିଲି । ପିଲାମାନଙ୍କୁ ମୋର ଶିକ୍ଷାଦାନ ଓ ମୋର ସାଂସ୍କୃତିକ ଦକ୍ଷତା ଏଠାରେ ବେଶ୍ ପ୍ରଭାବିତ କରିଥିଲା । ବିଶେଷତଃ ଜଣେ ନାଟ୍ୟକାର ସାହିତ୍ୟିକ ଓ ଗୀତିକାର ଭାବେ ମୋର ଲୋକପ୍ରିୟତା ବଢ଼ିଥିଲା । ବିଦ୍ୟାଳୟର ପ୍ରଧାନଶିକ୍ଷକ ଅକ୍ଷୟ କୁମାର ଘୋଷଙ୍କ ସଦିଚ୍ଛା ଯୋଗୁଁ ମୁଁ ଏଠାରେ ଶିକ୍ଷାର ନବୀକରଣ ପ୍ରକ୍ରିୟାରେ ତାଲିମ୍ ପାଇଁ ବାଣପୁର, ବାଲୁଗାଁ ଆଦି ସ୍ଥାନକୁ ଯାଇଥିଲି । ଏଠାରେ ଅବସ୍ଥାନ ସମୟରେ ଚିଲିକା ଏବଂ କାଳିଜାଇ, ବାଣପୁର ଭଗବତୀ ଦର୍ଶନ ମଧ୍ୟ କରିଥିଲି । ଏଠାରେ ଅବସ୍ଥାନ କାଳରେ ମଧ୍ୟ ପ୍ରଥମ କରି ମୋର ପରିବାର (ମାଆ, ସ୍ତ୍ରୀ ଓ ଶିଶୁପୁତ୍ର) ସହ କିଛିକାଳ ରହି ବେଶ୍ ହସ ଖୁସିରେ ସମୟ କାଟିଥିଲି ।

ରାଜେନ୍ଦ୍ର ନାରାୟଣ ହାଇସ୍କୁଲ, ହିଙ୍ଗୁଳା ହାଇସ୍କୁଲ, ଶଙ୍ଖଚିଲ ଏବଂ ଡୋଲିପୁରର ଟ୍ରେନିଂ ସ୍କୁଲରେ ଯୋଗ ଦେଇଥିଲି । ପରେ ପୂର୍ବାଞ୍ଚଳ ଭାଷା କେନ୍ଦ୍ର ଭୁବନେଶ୍ୱର ଯାଇ ଅସମୀୟା ଭାଷା ଶିକ୍ଷା କରିଥିଲି । ଏଠାରେ ଅସମୀୟା ଭାଷା ଶିକ୍ଷା ସମୟ ମାତ୍ର ଦଶମାସ । ପ୍ରଥମେ ପ୍ରଥମେ ମୋତେ ଭଲ ଲାଗୁ ନ ଥିଲା, ପରେ ଏହି ପରିବେଶ ସହ ଖାପଖୁଆଇ ଚଳିଲି । ଅଶୋକ, କାଳୀପ୍ରସନ୍ନ, ଉମେଶ, ସୁଭଦ୍ରା, ଶାନ୍ତିପ୍ରଭା, ସୁହାସିନୀ ଆଦି ସହପାଠୀଙ୍କ ସହ ବେଶ ହସଖୁସିରେ ସମୟ କଟିଲା । କେତେକ କେରଳୀ, ମଧ୍ୟପ୍ରଦେଶ

ଶିକ୍ଷକ ଶିକ୍ଷୟତ୍ରୀ ସହ ମଧ୍ୟ ବନ୍ଧୁତା ଗଢ଼ି ଉଠିଥିଲା । ମୁଁ ମଧ୍ୟ ଅସମୀୟା ଭାଷାରେ ପ୍ରବନ୍ଧ ଓ କବିତା ଲେଖା ଆରମ୍ଭ କଲି । ପୂର୍ବାଞ୍ଚଳ ଭାଷାକେନ୍ଦ୍ରର ଅଧ୍ୟକ୍ଷ ଯତୀନ୍ଦ୍ର ମୋହନ ମହାନ୍ତି ମୋର ଲେଖକୀୟ ଗୁଣ ଦେଖି ପ୍ରଭାବିତ ହୋଇଥିଲେ । ଏପରିକି ମୋର ଗୋଟିଏ କବିତା 'ମୋ କଣ୍ଢେଇ ଶାଶୂ ଘରକୁ ଯିବି', ଓଡ଼ିଆ ପାଠ୍ୟକ୍ରମରେ ସ୍ଥାନ ଦେଇଥିଲେ ।

ଶିକ୍ଷାମୂଳକ ଆସାମ ପରିଭ୍ରମଣ ସମୟରେ ମଧ୍ୟ ଆସାମର ଗୌହାଟୀ ବିଶ୍ୱବିଦ୍ୟାଳୟ ଅସମ ବିଭାଗରେ ମୁଁ ଆସାମ ଭାଷାର ବକ୍ତୃତା ଦେବା, ଗୌହାଟି ଆକାଶବାଣୀରେ ଅସମୀୟା କବିତା ପାଠ କରିବା, ଶିବ ସାଗର ମହାବିଦ୍ୟାଳୟରେ ଶକୁନି ଭୂମିକାରେ ଅଭିନୟ କରିବା ଦ୍ୱାରା ବେଶ୍ ପ୍ରଭାବଶାଳୀ ଶିକ୍ଷାର୍ଥୀଭାବେ ଫନିନ୍ଦ୍ର ନାରାୟଣ ଦତ୍ତବରୁଆଙ୍କ ପ୍ରିୟ ଛାତ୍ର ହେଲି । ଆସାମରେ ପ୍ରସିଦ୍ଧ ଚିତ୍ର ତାରକା ଗୀତା ଚୌଧୁରୀ, ଗାୟକ ଖଗନ ମହନ୍ତ, ଲକ୍ଷହୀରା ଦାସ, ଅର୍ଚ୍ଚନା ଦାସ, ଅଧ୍ୟାପକ ନବକାନ୍ତ ବରୁଆ ଆଦିଙ୍କ ସହ ସୁଖଦ ଓ ଶିକ୍ଷାପ୍ରଦ ମୁହୂର୍ତ୍ତ କଟାଇଥିଲି ।

ବ୍ରହ୍ମପୁତ୍ରଠାରେ ଥିବା ଉମାନନ୍ଦ ଶିବ ମନ୍ଦିର, ଶକ୍ତିପୀଠ କାମାକ୍ଷା ତୀର୍ଥ, ବଶିଷ୍ଠ ଆଶ୍ରମ, ଚିଡ଼ିଆଖାନା ଆଦି ଦେଖି ଖୁବ୍ ଆନନ୍ଦିତ ହେଲି । ଏହି ସମୟରେ ମୋ ଶିଶୁପୁତ୍ର ଟୁଟୁ (ଅଶୋକ)କୁ ଓଡ଼ିଶାରେ ଛାଡ଼ି ଯାଇଥିବାରୁ ଖୁବ୍ ମନେପଡୁଥିଲା । ତାର କୁନି କୁନି ହାତରେ ଚିଠି ଲେଖି ମୋପାଖକୁ ପଠାଇଥିଲା । ସେ ଚିଠିଟି ଏବେ ବି ଅଛି । ଟୁଟୁ କଥା ମନେ ପଡ଼ିଲେ ମୁଁ ଗାୟିକା ଅର୍ଚ୍ଚନା ଦାସଙ୍କ ପୁତୁରା, ଝିଆରିଙ୍କ ପାଖରେ ସମୟ ବିତାଏ । ଏହି ସମୟରେ ନୂତନ ବର୍ଷ ଜାନୁୟାରୀ ପହିଲା ପଡ଼ିଥିଲା । ମୁଁ ସୁଗାୟିକା ଅର୍ଚ୍ଚନା ଦାସଙ୍କ ଘରକୁ ଯାଇ ନୂଆବର୍ଷ ପାଳିଥିଲି । ମିଠା ଖାଇଥିଲି ।

ତେବେ ଏହି Languageରେ ଟ୍ରେନିଂ ନେବାବେଳେ ଅଫିସ୍ ସୁପରିଟେଣ୍ଡେଣ୍ଟ୍ ଚକ୍ରଧରବାବୁଙ୍କ ରୁକ୍ଷ ବ୍ୟବହାର ବଡ଼ କଷ୍ଟଦାୟକ ଥିଲା । ତେବେ ତତ୍‌କାଳୀନ ସ୍ୱାସ୍ଥ୍ୟ ସଚିବ ଡାକ୍ତର ସୀତାକାନ୍ତ ମହାପାତ୍ରଙ୍କ ସହ ମୋର ସମ୍ପର୍କ ଥିବାର ଜାଣିବାପରେ ଚକ୍ରଧରବାବୁ ମୋ ପ୍ରତି ଟିକେ ସମ୍ମାନ ପ୍ରଦର୍ଶନ କରୁଥିବାରୁ ମୁଁ ଆଶ୍ୱସ୍ତ ହେଲି ।

ଏଠାରେ ରହଣି କାଳ ଭିତରେ ଧଉଳି ଶାନ୍ତିସ୍ତୂପ ପରିଦର୍ଶନ, ନନ୍ଦନ କାନନରେ ବଣଭୋଜି ସାଙ୍ଗକୁ ଅସମୀୟା ଭାଷା ଶିକ୍ଷା ଓ ଆସାମ ଶିବସାଗର, ସିଲଂ ଆଦି ସ୍ଥାନ ପରିଦର୍ଶନ ଖୁବ୍ ଆନନ୍ଦଦାୟକ ଥିଲା । କଲିକତାରେ ବିରଳା ପ୍ଲାନେଟୋରିୟମ୍ ତଥା ବଟାନିକାଲ ଗାର୍ଡନ ଭ୍ରମଣ ମନେପଡ଼େ ।

ମୋଟ ଉପରେ ସୁଖରେ ଅସମୀୟା ଭାଷା ଶିକ୍ଷା ଶେଷକରି ପୁନରାୟ ଯେଉଁ ଅନୁଷ୍ଠାନରୁ ଅସମୀୟା ଭାଷା ଶିକ୍ଷା କରିବାକୁ ଯାଇଥିଲି, ଶିକ୍ଷା ଶେଷରେ ପୁଣି ସେହି

ଡୋଲିପୁର ସେକେଣ୍ଡାରୀ ସ୍କୁଲ ଆସି କାର୍ଯ୍ୟରେ ଯୋଗ ଦେଲି, ୧.୫.୭୩ରେ ଯୋଗ ଦେଇ ୧୨.୫.୯୦ ପର୍ଯ୍ୟନ୍ତ ପ୍ରାୟ ୧୭ ବର୍ଷରୁ ଊର୍ଦ୍ଧ୍ୱ ସମୟ ଏଠାରେ ୨ୟ ଥର ପାଇଁ କାର୍ଯ୍ୟକଲି । ଏହି ସମୟରେ ପ୍ରଧାନଶିକ୍ଷକ ଭାବେ ତ୍ରିଲୋଚନ ଦାସ, ଶିବରାମ ସାହୁ ଯୋଗଦେଲେ । ପରେ ଏହି ଅନୁଷ୍ଠାନଟି D.I.E.T. (ଡି.ଆଇ.ଇ.ଟି.) ପାହ୍ୟାକୁ ଉନ୍ନତିହେଲା । ଏଠାକୁ ମାଗୁଣି ଚରଣ ସେଠୀ ଆସି ଅଧକ୍ଷ ଭାବେ ଯୋଗଦେଲେ ।

ତେବେ ତିନିଜଣ ପ୍ରଧାନ ଶିକ୍ଷକ/ଅଧକ୍ଷ ପାଖରେ କାର୍ଯ୍ୟକରି ମୁଁ କାହାକୁ ମୋ କର୍ତ୍ତବ୍ୟ ପାଳନରେ ହତାଶ କରି ନାହିଁ ।

ମୋର ଶିକ୍ଷାଦାନ ସାଙ୍ଗକୁ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ବିଦ୍ୟାଳୟ ମୁଖପତ୍ର ବାହାର କରିବା, ନାଟକରେ ନିର୍ଦ୍ଦେଶନା ଦେବା ସାଙ୍ଗକୁ କ୍ରୀଡ଼ା, ଉଦ୍ୟାନ କର୍ମରେ ମଧ୍ୟ ନିଜକୁ ସାମିଲ କରିବାରେ ମୁଁ ବ୍ୟସ୍ତ ରହୁଥିଲି । ବିଶେଷତଃ ଗୁରୁ ଛାତ୍ରଛାତ୍ରୀଙ୍କ ପ୍ରାକ୍ଟିକାଲ ଟିଚିଂରେ ମୁଁ ସକ୍ରିୟ ଭୂମିକା ନେଇଥିଲି ।

ସେ ଯାହାହେଉ ଏହି ଘଟଣାବହୁଳ ଜୀବନ ଭିତରେ ଓ ଅନୁଷ୍ଠାନରେ ପ୍ରାୟ ୧୮ ବର୍ଷ କାମ କରି ୧୬.୫.୯୦ ଅପରାହ୍ଣରେ ବିଦାୟ ନେଲି । ମୋର ଏ ବଦଳି ପଛରେ ପ୍ରଧାନ ଶିକ୍ଷକ/ଅଧାପକଙ୍କ କିଛି ଭୂମିକା ବି ଥିଲା । ତେଣୁ ବିଦାୟବେଳେ ବ୍ରାହ୍ମଣୀଦେବୀ ମନ୍ଦିର ଆମ୍ବତୋଟାର ଆକର୍ଷଣ ସାଙ୍ଗକୁ ସ୍ଥାନୀୟ ଅନୁଷ୍ଠାନଗୁଡ଼ିକର କାର୍ଯ୍ୟସୂଚୀମାନଙ୍କ ସଜଳ ସ୍ମୃତି ମୋତେ ପଛକୁ ଟାଣୁଥିଲା ।

ସରକାରୀ ଚାକିରିରେ ବଦଳି ହେବା ସ୍ୱାଭାବିକ । ଏଣୁ ଏହାକୁ ସହଜ ଭାବରେ ଗ୍ରହଣକରି କୋରେଇ ବ୍ଲକ ଆସି ସ୍କୁଲ ସବ୍ ଇନିସ୍‌ପେକ୍ଟର ଭାବେ ଯୋଗଦେଲି । ଏଠାରେ ମୋର ଅବସ୍ଥାନ ଖୁବ୍ ଅଳ୍ପସମୟ ଥିଲା ।

ସ୍କୁଲ ସବ୍‌ଇନିସ୍‌ପେକ୍ଟର ୧୩.୫.୯୦ ରୁ ୯.୯.୯୧ ଏହି ସମୟରେ କୋରେଇରେ ବି.ଡ଼ି.ଓ. ଥିଲେ ପ୍ରଶାନ୍ତ ସାମଲ । ସେ ମହାଶୟଙ୍କ ସହ ମୋର ଆଗରୁ ପରିଚିତ ଥିଲା । ଏଣୁ ଏଠାରେ କାର୍ଯ୍ୟ କରିବାରେ ମୋର ଅସୁବିଧା ନ ଥିଲା । ମୋର କାର୍ଯ୍ୟଦକ୍ଷତା ପ୍ରତି ବି.ଡ଼ି.ଓ. ବେଶ୍ ଆସ୍ଥାଶୀଳ ଥିଲେ । ସେ ଯେଉଁ ଦାୟିତ୍ୱ ଦେଉଥିଲେ ମୁଁ ସୁରୁରୁ ରୂପେ ଶେଷ କରୁଥିଲି ।

କିନ୍ତୁ ସବ୍ ଇନିସ୍‌ପେକ୍ଟର ଭାବେ ପ୍ରାଥମିକ ବିଦ୍ୟାଳୟଗୁଡ଼ିକୁ ନିୟମିତ ପରିଦର୍ଶନ କରିବା, ଶିକ୍ଷକଶିକ୍ଷୟତ୍ରୀଙ୍କୁ କାର୍ଯ୍ୟରେ ସମୟାନୁଯାୟୀ ଯୋଗଦେବା ପାଇଁ ମୁଁ ପରାମର୍ଶ ଦେବା ଯୋଗୁଁ ପ୍ରାଥମିକ ଶିକ୍ଷକସଂଘର କର୍ମକର୍ତ୍ତା ସଙ୍ଗେ ମୋର ସୁସମ୍ପର୍କ ରହୁ ନ ଥିଲା । ଏଣୁ ବେଳେବେଳେ ମୋର ବ୍ୟକ୍ତିଗତ ଜୀବନ ଚର୍ଯ୍ୟା ବଡ଼ କଷ୍ଟକର ହୋଇପଡୁଥିଲା ।

ତେବେ ଏହି ବ୍ଲକର ଚାକିରି କାଳ ଭିତରେ ଦୁଇଜଣ ବି.ଡ଼ି.ଓ. ପ୍ରଶାନ୍ତ ସାମଲ ଏବଂ ଗୋପାଳ ଦେ ମୋ ପ୍ରତି ଖୁବ୍ ଶ୍ରଦ୍ଧାଶୀଳ ଥିଲେ । କିନ୍ତୁ ଶିକ୍ଷକମାନଙ୍କ ସହଯୋଗ ପାଉଥିଲେ ମୁଁ ବୋଧେ ଖୁବ୍ ଖୁସି ହୋଇଥାନ୍ତି ।

ଯାଜପୁର-୨ (ଡୋଲିପୁର) ଶିକ୍ଷା ଜିଲ୍ଲାରେ ଜୁନିଅର କୋଅର୍ଡିନେଟର : (୧୦.୯.୯୧ ରୁ ୬.୪.୯୫) କୋରେଇ ବ୍ଲକ୍‌ରୁ ସବ୍ ଇନିସ୍‌ପେକ୍ଟରରୁ ବଦଳି ହୋଇ କୋରେଇ ବ୍ଲକ୍‌ର ନନ୍‌ଫର୍ମାଲ ଏଜୁକେସନ ଦାୟିତ୍ୱ ନେଲି ଜୁନିୟର କୋ-ଅର୍ଡ଼ିନେଟର ଭାବେ । ଏଣୁ ବ୍ଲକର ଯାଜପୁର ଜିଲ୍ଲା- ୨ (ଡୋଲିପୁର) ଶିକ୍ଷାଜିଲ୍ଲାରେ ମୋର କାର୍ଯ୍ୟକାଳ ପ୍ରାୟତଃ ଚାରିବର୍ଷରୁ ଊର୍ଦ୍ଧ୍ୱ ସମୟ ସୀମିତ ରହିଲା । ଏହି କାର୍ଯ୍ୟକାଳ ଭିତରେ ମୁଁ ଅଣ ଆନୁଷ୍ଠାନିକ କେନ୍ଦ୍ରଗୁଡ଼ିକ ନିୟମିତ ଦେଖିବାପାଇଁ ମୋର ନିଷ୍ଠାପର ଉଦ୍ୟମ ଜାରି ରହିଲା । ନିୟମିତ ଏହି କେନ୍ଦ୍ରଗୁଡ଼ିକୁ ପରିଦର୍ଶନ କରୁଥିଲି ।

ଏହି ସମୟରେ ସିନିୟର କୋ-ଅର୍ଡ଼ିନେଟର କଲ୍ୟାଣ ମହାପାତ୍ର ଥିଲେ । ସେ ମୋର ସମୟାନୁବର୍ତ୍ତିତା, ନିୟମିତ ଟୁର୍ ଡାଏରି ଲେଖିବା ଏବଂ ତାଙ୍କ ନିକଟକୁ ପଠାଇବାର ଖୁବ୍ ଉଚ୍ଚ ପ୍ରଶଂସା କରୁଥିଲେ । କିନ୍ତୁ ମୋ ଶିକ୍ଷାଜିଲ୍ଲା ଅଧିକାରୀ ଓ ଅଫିସ୍‌ର ସହକାରୀମାନେ ଏଇ କାର୍ଯ୍ୟଧାରାରେ ଏତେଟା ସହଯୋଗୀ ନ ଥିଲେ । ଅବଶ୍ୟ ଡି.ଆଇ. ବୃନ୍ଦାବନ ଚନ୍ଦ୍ର ଶତପଥିଙ୍କ ଅମଳରେ ଅଫିସ୍‌ର କାର୍ଯ୍ୟ ଧାରାର ଯଥେଷ୍ଟ ଉନ୍ନତି ଆସିଥିଲା ।

ନିୟମକୁ କଡ଼ାକଡ଼ି କରି ମୁଁ ସହାୟକ/ସହାୟିକା ପ୍ରାର୍ଥୀ ଚୟନ କରିବା ସାଙ୍ଗକୁ ପ୍ରତ୍ୟେକଟି କାର୍ଯ୍ୟପ୍ରତି ସତର୍କ ଦୃଷ୍ଟିରଖି ଏହି ଡି.ଆଇ.ଅଫିସରେ ଏକ ପ୍ରଭାବଶାଳୀ ଭୂମିକା ରଖିଥିଲି । ପରେ ଏହି ଜୁନିୟର କୋ-ଅର୍ଡିନେଟରରୁ ସିନିୟର ଏସ୍.ଇ.ଏସ୍. (Sr.S.E.S.)କୁ ପଦୋନ୍ନତି ପାଇଲି ଏବଂ ଡେପୁଟି ଇନିସ୍‌ପେକ୍ଟର ଭାବେ ଏହି ଅଫିସ୍‌ରେ କାର୍ଯ୍ୟରେ ଯୋଗଦେଲି ।

ଡେପୁଟି ଇନିସ୍‌ପେକ୍ଟର : (୭.୪. ୯୫ ରୁ ୧୭. ୧୦.୯୬) ମୋର ଡେପୁଟି ଇନିସ୍‌ପେକ୍ଟର କାର୍ଯ୍ୟକାଳ ଭିତରେ ତିନିଜଣ ଡି.ଆଇ.ଙ୍କ ଅଧୀନରେ କାମ କରିବାକୁ ପଡ଼ିଥିଲା । ଏମାନଙ୍କ ଭିତରୁ ଜଣକ ପାଖରେ ମୁଁ ଜୁନିଅର କୋ-ଅର୍ଡ଼ିନେଟର୍ ଥିଲି । ଏଣୁ ସେ ମୋତେ ସହଯୋଗ କରୁଥିଲେ । ଏହାଙ୍କ ପରେ ଆସିଥିବା ଡି.ଆଇ.ଟିକେ ଅର୍ଥ ଲୋଲୁପ ଥିଲେ ଏଣୁ ମୋ ସହ ତାଙ୍କର ସମ୍ପର୍କ ଏତେଟା ଭଲ ନ ଥିଲା । ସେ ମୋର ପ୍ରଭାବ ଓ ପ୍ରଶଂସାକୁ ସହି ନ ପାରି ମୋତେ ଏକ ବାରଣ୍ଡାରେ ଅଫିସ୍ କରିବାକୁ ବାଧ୍ୟ କରିଥିଲେ । ଉଦ୍ଦେଶ୍ୟ ଥିଲା ମୁଁ ତାଙ୍କର ଲାଞ୍ଚ ମିଛ କାରବାର ଯେପରି ଦେଖି ନ ପାରେ ।

ଏହିଭଳି ଭାବରେ ଏଠାରେ କାମ କରୁ କରୁ ମୋର ପଦୋନ୍ନତି ପୁଣି ୨ୟ ଶ୍ରେଣୀ ପାହ୍ୟାକୁ ହେଲା । ମୁଁ ପୁଣି ଥରେ ମୋର ପୂର୍ବ ଶିକ୍ଷାନୁଷ୍ଠାନ ଡୋଲିପୁର (D.I.E.T.)କୁ Sr. Teacher educatior (ସିନିଅର ଟିଚର ଏଡୁକେଟର) ଭାବେ ଅବସ୍ଥାପିତ ହେଲି ।

ସିନିଅର ଟିଚର ଏଡୁକେଟର : (୧୮.୧୦.୯୬ ରୁ ୩.୧୨.୯୭) ଏଠାରେ ୨ୟ ଥର ପାଇଁ ଆସିଲି ସତ । କିନ୍ତୁ ସେକେଣ୍ଡାରୀ ଟ୍ରେନିଂସ୍କୁଲ ବାତାବରଣ ଏବେର ଏହି ଡି.ଆଇ.ଟି.ଇ. ବାତାବରଣ ମଧ୍ୟରେ ଯଥେଷ୍ଟ ଫରକଥିଲା । ସହକର୍ମୀମାନଙ୍କ ମଧ୍ୟରେ ଏତେଟା ଆନ୍ତରିକତା ନ ଥିଲା । ବରଂ ପରସ୍ପର ପରସ୍ପର ପ୍ରତି କୃତ୍ରିମ ବ୍ୟବହାର କରୁଥିଲେ ।

ଏହି ସମୟରେ ମୋଟ ଉପରେ (D.I.E.T.)ରେ ସ୍କୁଲ ଏବଂ କଲେଜର ଏକ ମିଶ୍ରିତ ବାତାବରଣ ଚାଲୁଥିଲା । ଏହି ବାତାବରଣ ସେତେଟା ଆଶ୍ୱସ୍ତିକର ଲାଗୁ ନ ଥିଲା । ଯାହେଉ ଅଳ୍ପଦିନ ଭିତରେ ମୁଁ ଏଠାରୁ ପ୍ରଧାନ ଶିକ୍ଷକଭାବେ ବଦଳି ହୋଇ ମୋର ହାଇସ୍କୁଲ ଛାତ୍ରଜୀବନ କଟାଇଥିବା ଏନ୍.ସି. ହାଇସ୍କୁଲ ଯାଜପୁରରୋଡ଼ରେ ଯୋଗଦେଲି ।

ପ୍ରଧାନ ଶିକ୍ଷକ କାର୍ଯ୍ୟକାଳ : (୩.୧୨.୯୭ ରୁ ୩୧.୫.୨୦୦୦) ଏହି ୩୦ ମାସ ହେଉଛି ମୋ ସରକାରୀ ଚାକିରି ଜୀବନରେ ଶେଷପର୍ଯ୍ୟାୟ । ଯେଉଁ ଏନ୍.ସି. ହାଇସ୍କୁଲରେ ମୁଁ ୧୯୫୪-୫୮ ଚାରିବର୍ଷ ଛାତ୍ରଜୀବନ କଟାଇଥିଲି ସେହିଠାକୁ ପୂର୍ବରୁ ଜଣେ ସହକାରୀ ଶିକ୍ଷକ ଭାବେ ଆସିବାକୁ ଚାହିଁଥିଲେ ବି ସୁଯୋଗ ପାଇ ନ ଥିଲି । କିନ୍ତୁ ୩. ୧୨.୯୭ରେ ପ୍ରଧାନ ଶିକ୍ଷକଭାବେ ଯୋଗଦେବାର ସୁଯୋଗ ପାଇଲି । ବୋଧହୁଏ ଏ ସ୍କୁଲର ବିଶୃଙ୍ଖଳା ପରିସ୍ଥିତିକୁ ସଜାଡ଼ିବାପାଇଁ ଶିକ୍ଷାବିଭାଗ କର୍ମକର୍ତ୍ତା ମୋତେ ଏଠାକୁ ପଠାଇଥିଲେ । କାରଣ ଏଠାକୁ ବଦଳି ହୋଇ ମୁଁ ଆସିବାପାଇଁ ଆଦୌ ଚେଷ୍ଟା କରି ନ ଥିଲି ।

ସେ ଯାହା ହେଉ ଏହି ବିଦ୍ୟାଳୟକୁ ଭଲଭାବେ ଗଢ଼ିବାପାଇଁ ମୋର ଅନେକ ସ୍ୱପ୍ନରୁ କିଛିଟା ସଫଳ ହେଲା । କିଛିଟାରେ ଆଶାନୁରୂପ ଫଳ ପାଇଲି ନାହିଁ ।

ସର୍ବପ୍ରଥମ କର୍ତ୍ତବ୍ୟ ହେଲା ବିଦ୍ୟାଳୟରେ ଛାତ୍ରମାନଙ୍କ ମନରେ ଅନୁଷ୍ଠାନ ପ୍ରତି ଅନୁରକ୍ତିଜାତ କରାଇବା । ଛାତ୍ର ଓ ଶିକ୍ଷକ ସମସ୍ତେ ଅନୁଭବ କରନ୍ତୁ ଏ ଅନୁଷ୍ଠାନ ତାଙ୍କର ନିଜର । ଏଇ ମନୋଭାବ ସୃଷ୍ଟିପାଇଁ ମୁଁ ପ୍ରଧାନ ଶିକ୍ଷକଭାବେ ସମସ୍ତ ଶିକ୍ଷକ ଓ ଛାତ୍ରଙ୍କ ଅନ୍ତରଙ୍ଗ ହେବାକୁ ଚେଷ୍ଟା କରି କିଛିଟା ସଫଳ ହୋଇଥିଲି । ତେବେ ଏ ଦିଗରେ ମୋର ପ୍ରଥମ ସହକାରୀ ରବିବାବୁ ମୋତେ ଖୁବ୍ ସହଯୋଗ ଦେଇଥିଲେ ।

ଏହି ବିଦ୍ୟାଳୟରେ ଗୃହ ଆଉ ଖେଳପଡ଼ିଆ ଉପରେ ସ୍ଥାନୀୟ ଜନସାଧାରଣ ଅଯଥା ଦଖଲ ଅଜାଡ଼ି ଦେଇଥାନ୍ତି । ଅଥଚ ବିଦ୍ୟାଳୟର ଉନ୍ନତିପାଇଁ ଟିକେ ବି ଚିନ୍ତା କରନ୍ତି ନାହିଁ ।

ଏହାହିଁ ଏ ବିଦ୍ୟାଳୟର ଦୁର୍ଭାଗ୍ୟ । ତଥାପି ବିଭିନ୍ନ କ୍ଷେତ୍ରରେ ଏଠାରେ ମୁଁ ସଫଳ ହୋଇଛି, ପାଠପଢ଼ାରେ ଉନ୍ନତି ସାଙ୍ଗକୁ ବିଦ୍ୟାଳୟର ପ୍ରତିବର୍ଷ ପୁରସ୍କାର ବିତରଣ ଉତ୍ସବ ବିଦ୍ୟାଳୟର ପତ୍ରିକା 'ବ୍ୟାସ ଦୀପିକା' ପ୍ରକାଶନ ଏବଂ ପରିଭ୍ରମଣ ଆଦି କାର୍ଯ୍ୟକ୍ରମ କରିବାରେ ସଫଳତା ଅର୍ଜନ କରିଥିଲି ।

ବିଦ୍ୟାଳୟ ପାଇଁ ଆବଶ୍ୟକ ନୂତନ ଗୃହ ନିର୍ମାଣ ଏବଂ ପୁରାତନ ଗୃହଗୁଡ଼ିକର ମରାମତି ପାଇଁ ଇଞ୍ଜିନିୟରିଂ ସଂସ୍ଥା P.W.D. ଅଫିସ୍‌କୁ ବାରମ୍ବାର ଯାଇ ସଫଳତା ପାଇଥିଲି । ତେବେ କେତେକ କର୍ମଚାରୀ ବିଶେଷତଃ ୪ର୍ଥ ଶ୍ରେଣୀ କର୍ମଚାରୀଙ୍କ ସହଯୋଗ ଏ ବିଦ୍ୟାଳୟରେ ଆଦୌ ନ ଥିଲା । ଏ ଧାରାର ମୁଁ ପରିବର୍ତ୍ତନ କରିବାପାଇଁ ଚାହିଁଲେ ବି ଉପରିସ୍ଥ କର୍ମକର୍ତ୍ତା ମୋତେ ସହଯୋଗ ଦେଇ ନ ଥିଲେ ।

ତେବେ ବିଦ୍ୟାଳୟର ଭୂସମ୍ପତ୍ତି, ରକ୍ଷଣାବେକ୍ଷଣ, ନୂତନ ଗୃହନିର୍ମାଣ, ବିଦ୍ୟାଳୟର ମୁଖପତ୍ର ପ୍ରକାଶନ, ପୁରସ୍କାର ବିତରଣଉତ୍ସବ ପାଳନ, ଛାତ୍ରଙ୍କ ପରିଭ୍ରମଣ ଆଦି (Co-curricular) କାର୍ଯ୍ୟକ୍ରମରେ ମୁଁ କିଛିଟା କରି ପାରିଥିବାରୁ ଆତ୍ମସନ୍ତୋଷ ନେଇ ଏ ବିଦ୍ୟାଳୟରୁ ଅବସର ନେଲି ୩୧.୫.୨୦୦୦ ମସିହାରେ ।

ଆଜି ମୋ ପ୍ରଚେଷ୍ଟାରେ ନିର୍ମିତ କୋଠାବାଡ଼ିରେ ଜିଲ୍ଲା ଶିକ୍ଷାଧିକାରୀଙ୍କ ଅଫିସ୍ କାର୍ଯ୍ୟ କରୁଛି । ଫଳରେ ସରକାର ଅଯଥା ଘରଭଡ଼ା ଦେବାରୁ ରକ୍ଷାପାଉଛି ଏବଂ ବିଦ୍ୟାଳୟରେ କୋଠାବାଡ଼ି ମଧ୍ୟ କିଛିଟା ସୁରକ୍ଷିତ ରହିଛି । ଏ ମୋପାଇଁ ଆଶ୍ୱାସନାର କଥା ।

**ଅବସର ଜୀବନ :** ଏବେ ଚାକିରି ଜୀବନରୁ ଅବସର ନେଲା ପରେ ମୁଁ ଆପାତତଃ ଏକ ସୁଖମୟ ସ୍ୱାଧୀନ ଜୀବନ ଯାପନ କରୁଛି । ମୋର ସାରସ୍ୱତ ସାଧନା ଅବ୍ୟାହତ ରହିଛି । ଆକାଶବାଣୀ, ଦୂରଦର୍ଶନ ସହ ମୁଁ ଜଣେ ଗୀତିକାର ଓ ନାଟ୍ୟକାର ଭାବେ ନିଜକୁ ସମ୍ପୃକ୍ତ କରି ଆସୁଛି ।

'ବୋଲେ ହୁଁଟି' ନାମକ ଏକ ପଲ୍ଲୀଜୀବନଧର୍ମୀ ତ୍ରୈମାସିକ ପତ୍ରିକା ଦୀର୍ଘ ୭ବର୍ଷ ଧରି ନିରବଚ୍ଛିନ୍ନ ଭାବେ ପ୍ରକାଶ କରିଆସୁଛି । ଏ ପତ୍ରିକା ପ୍ରକାଶନ ପାଇଁ ମୁଁ କୌଣସି ବିଜ୍ଞାପନ ବିଶେଷ ପାଉ ନାହିଁ ସତ କିନ୍ତୁ ପାଠକ ପାଠିକାମାନଙ୍କ ସହଯୋଗ ବଢ଼ିଚାଲିଛି । ପତ୍ରିକା ପ୍ରତି ଡ. ରମାକାନ୍ତ ରଥ (ପଦ୍ମଭୂଷଣ)ଙ୍କ ଠାରୁ ସାଧାରଣ ପାଠକଟିଏ ମଧ୍ୟ ଆଦର ପ୍ରଦର୍ଶନ କରୁଛନ୍ତି । ବହୁ ବିଶିଷ୍ଟ ସାହିତ୍ୟିକ, ସାହିତ୍ୟିକା ଯଥା ଅତିବଡ଼ି ଜଗନ୍ନାଥ ଦାସ ପୁରସ୍କାର ପ୍ରାପ୍ତ ବିଶିଷ୍ଟ ଗାଳ୍ପିକ ଅଚ୍ୟୁତାନନ୍ଦ ପତି, କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ବୀଣାପାଣି ମହାନ୍ତି, ବିଷୁବ ପୁରସ୍କାର ବିଜେତା ବ୍ରଜନାଥ ରଥ ସମେତ

ଓଡ଼ିଶାର ପ୍ରାୟ ଆଗଧାଡ଼ି ଲେଖକ ଲେଖିକାଙ୍କ ସାରସ୍ୱତ ସମ୍ଭାରରେ 'ବୋଲେ ହୁଁ ଟି' ସମୃଦ୍ଧ । ତେବେ ଗ୍ରାମାଞ୍ଚଳରେ ଅବହେଳିତ ସାରସ୍ୱତ ସାଧକ ସାଧିକାଙ୍କୁ ଲୋକଲୋଚନକୁ ଆଣିବାର ପ୍ରୟାସ ଜାଗିରହିଛି ।

ମୁଁ ଆମ ବ୍ଲକର ସାରସ୍ୱତ ସଙ୍ଗଠନ କୋରେଇ ମଣ୍ଡଳ ସାହିତ୍ୟସଂସଦଟିକୁ ଠିକ୍ ବାଟରେ ଚଳାଇବାର ଆନନ୍ଦ ମୋ ଅବସରଜୀବନକୁ ମହନୀୟ କରୁଛି । ଏ କ୍ଷେତ୍ରରେ ସମ୍ପାଦକ ସୂର୍ଯ୍ୟମଣି ଖୁଣ୍ଟିଆଙ୍କ ସକ୍ରିୟ ସହଯୋଗ ସର୍ବଦା ସ୍ମରଣୀୟ ।

ଅବସର ଜୀବନକାଳରେ ଓଡ଼ିଶା ସାହିତ୍ୟଏକାଡ଼େମୀ ଏବଂ ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ଗୀତିକବିତା କ୍ଷେତ୍ରରେ ମୋର ଅବଦାନ ପାଇଁ ମୋତେ ପୁରସ୍କୃତକରିବା ମୋ ପାଇଁ ଆନନ୍ଦର କଥା । ସେହିପରି ମଧ୍ୟ ଗୀତିକବିତା ଓ ଶିଶୁସାହିତ୍ୟର ବିକାଶପାଇଁ କୋରେଇ ମଣ୍ଡଳ ସାହିତ୍ୟସଂସଦ, ଉତ୍କଳ ସାହିତ୍ୟ ସମାଜରେ ଗୀତିକବି ଏବଂ ଶିଶୁ ସାହିତ୍ୟିକଙ୍କ ପୁରସ୍କାର ପ୍ରଦାନ ପାଇଁ ମୁଁ କିଛି ସ୍ଥାୟୀପାଣ୍ଠିର ବ୍ୟବସ୍ଥା କରିଛି । ଠିକ୍ ସେହିପରି ଗରିବ ନିରାଶ୍ରୟ କନ୍ୟାମାନଙ୍କ ବିବାହ ପାଇଁ ଶଂଖଚିଲ୍ଲାର ହିଙ୍ଗୁଳା କଲ୍ୟାଣ ପାଣ୍ଠିକୁ ଅର୍ଥଦାନ କରିଛି, କୋରେଇ ମାଇନର ସ୍କୁଲ ଏବଂ ସୁଜନପୁର ହାଇସ୍କୁଲରେ ମେଧାବୀ ଛାତ୍ରଛାତ୍ରୀଙ୍କୁ ଆର୍ଥିକ ସାହାଯ୍ୟ ପାଇଁ ମୁଁ ମଧ୍ୟ କିଛି ସ୍ଥାୟୀପାଣ୍ଠିର ବ୍ୟବସ୍ଥା କରିଛି ।

ସାରସ୍ୱତ କ୍ଷେତ୍ରରେ ଶିଶୁ ସାହିତ୍ୟ, ଗୀତିକବିତା ଓ ନାଟକ ବିଭାଗରେ ମୋର ଯଥେଷ୍ଟ ରୁଚି ରହିଛି । ଏହି ତିନିଟି ବିଭାଗ ସାଙ୍ଗକୁ ଅନୁବାଦ ଓ କବିତା କ୍ଷେତ୍ରରେ ମଧ୍ୟ ମୋର ଆଗ୍ରହ ରହିଛି । ଏ ସମସ୍ତ ବିଭାଗର ମୋର ପ୍ରକାଶିତ ପୁସ୍ତକ ସଂଖ୍ୟା ପ୍ରାୟ ୫୦ ପାଖାପାଖି । ଗ୍ରାମର ବିକାଶ ପାଇଁ, ସାଂସ୍କୃତିକ ବାତାବରଣ ସୁରକ୍ଷା ପାଇଁ ମୁଁ ମୋର କାୟ ମନୋବାକ୍ୟରେ ସହଯୋଗ ଦେଇ ଆସୁଛି । ତେବେ ଗୋଟିଏ କଥା ମୁଁ ସ୍ପଷ୍ଟଭାବେ କହିଦେବାକୁ ଚାହେଁ ମୁଁ ରାଜନୀତି ପ୍ରତି ଆଗ୍ରହୀ ଥିଲେ ବି ଆଜିର ଏ କଳୁଷିତ ରାଜନୀତିଠାରୁ ନିରାପଦ ଦୂରତ୍ୱରେ ରହିବାକୁ ଶ୍ରେୟସ୍କର ମନେ କରିଛି ।

ମୋର ଉଚ୍ଚଶିକ୍ଷିତ ପୁତ୍ର ଓ ପୁତ୍ରବଧୂ ଉଭୟେ ନିଜ ନିଜ କ୍ଷେତ୍ରରେ ବେଶ୍ ପ୍ରତିଷ୍ଠିତ । ଉଭୟେ ମଧ୍ୟ ଲେଖାଲେଖିରେ ରୁଚିରଖନ୍ତି । ପୁତ୍ର ଅଶୋକ ଇଂରେଜୀ ଭାଷାର ବୈଷୟିକ ପୁସ୍ତକ ରଚୟିତା; ପୁତ୍ରବଧୂ କୁମୁଦିନୀ କବିଭାବେ କିଛିଟା ପ୍ରଶଂସାଲାଭ କରିବାରେ ସମର୍ଥା । ସୁଗୃହିଣୀ ଭଣଜାବୋହୂ ମିନତି ଏବଂ ପତ୍ନୀ ସୁରବାଳା ସାଙ୍ଗକୁ ଭଣଜା କୃଷ୍ଣଚନ୍ଦ୍ର, ନାତି ନାତୁଣୀ ପୂଜା, ସୋନୁ ଓ ତାରୁନ୍‌ଙ୍କୁ ନେଇ ମୋର ଛୋଟସଂସାର (ପାରିବାରିକ ଜୀବନ)ରେ ମୁଁ ସନ୍ତୁଷ୍ଟ । ଭଗବାନ୍ ମୋତେ ସୁଖମୟ ଅବସର ଜୀବନଟିଏ ଦେଇଛନ୍ତି । ଆର୍ଥିକ ଅନଟନ ଜନିତ ସମସ୍ୟାର ମୁଁ ଆଦୌ ସମ୍ମୁଖୀନ ହୋଇ ନାହିଁ । ବରଂ ସ୍ୱଚ୍ଛସ୍ୱଚ୍ଛଳ ଜୀବନ ବିତାଇବା

ସଙ୍ଗେ ସଙ୍ଗେ ମୋର ପଡ଼ୋଶୀମାନଙ୍କ ହିତପାଇଁ ଯତ୍‌କିଞ୍ଚିତ୍ ସାହାଯ୍ୟ ସହଯୋଗ କରିଆସୁଛି । ଏହାହିଁ ମୋପାଇଁ ଆଶ୍ୱାସନା । ପ୍ରାକୃତିକ ବିପର୍ଯ୍ୟୟ ସମୟରେ ମୋ ଛାତ୍ରବୃତ୍ତି ଅର୍ଥ, ଦରମା, ଏପରିକି ସୁନାମି ପ୍ରଭାବିତଙ୍କ ପାଇଁ ପେନ୍‌ସନ୍‌ରୁ ପ୍ରଧାନମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିକୁ ମନିଅର୍ଡ଼ର କରି ଅର୍ଥଦାନ କରିଆସିଛି, କରିଆସୁଥିବି ମଧ, ଏହାହିଁ ମୋପାଇଁ ଏକ ଆଶ୍ୱାସନା ।

ମୋ ଜୀବନରେ ଏକ ନୀତି ବୋଲି ଧରି ନେଇଛି- କାହାର ଉପକାର କରି ନ ପାରେ, କିନ୍ତୁ କାହାର କ୍ଷତି କରିବି ନାହିଁ । ଭଗବାନ୍ ମୋତେ ସାହସ ଦିଅନ୍ତୁ ସେଇ ଉଦ୍ଦେଶ୍ୟରେ ମୁଁ ସଫଳ ହୁଏ ।

**ଅବସୋସ ରହିଗଲା :** ହଁ ମୋର ଏକ ଅବସୋସ ରହିଗଲା । ଏ କଥାଟି ନ କହିଲେ ମନରେ ସେ ଅବସୋସଟା ଗୋଳେଇ ଘାଣ୍ଟି ହେଉଥିବ । କଥାଟା ହେଲା– ଜଣେ ସହକାରୀ ଶିକ୍ଷକଭାବେ ହେଉ ବା ପ୍ରଧାନ ଶିକ୍ଷକଭାବେ ହେଉ ରାଜ୍ୟସ୍ତରରେ ବା କେନ୍ଦ୍ରୀୟ ସ୍ତରରେ ପୁରସ୍କୃତ/ସମ୍ମାନିତ ହେବାପାଇଁ ମୋର ପ୍ରାୟ ସମସ୍ତ ଯୋଗ୍ୟତା ଥିଲା । କିନ୍ତୁ ମୁଁ ଏ ପୁରସ୍କାର ବା ସମ୍ମାନରେ ଭାଗୀଦାର ହୋଇପାରିଲି ନାହିଁ । ଏହାର କାରଣ ହେଲା ସେକେଣ୍ଡାରୀ ସ୍କୁଲରେ ମୋର ପନ୍ଦରବର୍ଷ ଶିକ୍ଷକତା ଅଭିଜ୍ଞତା ନ ଥିଲା । କିନ୍ତୁ ଦୁଃଖର କଥାହେଲା ସେକେଣ୍ଡାରୀ ଟ୍ରେନିଂ ସ୍କୁଲରେ ଶିକ୍ଷା ବିଭାଗ ମୋତେ ପ୍ରାୟ ୨୫ ବର୍ଷ ଅଟକାଇ ରଖିଲେ, ମୋତେ ସେକେଣ୍ଡାରୀ ସ୍କୁଲକୁ ଆସିବାକୁ ସୁଯୋଗ ଦେଲେ ନାହିଁ ଏଥିପାଇଁ କ'ଣ ମୁଁ ଦାୟୀ ?

ଏଣୁ ଏକ ପକ୍ଷରେ ସରକାରୀ ନିୟମ ରହିଲା; ହାଇସ୍କୁଲରେ ୧୫ ବର୍ଷ ଶିକ୍ଷକତା କରିବା କଥା ଅଥଚ ମୁଁ ଏଥିରୁ ବଞ୍ଚିତ ହେଲି ମୋର ସରକାରଦ୍ୱାରା । ଇଚ୍ଛା ହେଉଥିଲା ଏ ସମ୍ପର୍କରେ ବିଚାରାଳୟକୁ ଯିବାପାଇଁ । ପୁଣି ମନ ମରିଗଲା– ଛାଡ଼, ପୁରସ୍କାରଟା ପାଇଁ ବିଚରାଳୟକୁ ଯିବାଟା ଭଲ ହେବନି ।

ମୁଁ ନ ପାଇଲି ନାହିଁ, ମୋରି ସ୍ଥାନରେ ମୋର ଜଣେ ଶିକ୍ଷା ବିଭାଗ ଭାଇ କି ଭଉଣୀ ତ ପାଇଛନ୍ତି !

କିନ୍ତୁ ସରକାରଙ୍କ ଏ ନିୟମଟା ଠିକ୍ କି ଭୁଲ୍ ପାଠକଙ୍କ ଉପରେ ଛାଡ଼ି ଦେଉଛି ।

## ନନ୍ଦକିଶୋର ସିଂହଙ୍କ କେତୋଟି ଲୋକପ୍ରିୟ ଗୀତ

### ଗୀତର ପ୍ରଥମ ଧାଡ଼ି

ସୁଷମାଗୋ ତୁମ ଅଙ୍ଗେ ଭରା ମଧୁ ଜୋଛନା/ବସନ୍ତ ଲେଖିଛି ଚିଠି ଗୋଲାପି ଗୋଲାପି/ଫଗୁଣ ହେ ରଙ୍ଗ ଆଉ ଢାଳନା ଢାଳନା/ରାମ ସିନା ନାହାନ୍ତିରେ ଅଛି ରାମ ନାମ/ଜହ୍ନତ ଦେଇଛି ଚିଠି କୁନି କୁନି ଜୋଛନା ହାତରେ/ ନିତି ଯାଅ ଏଇବାଟେ ଏଇଠିବି ଦେଖାହୁଏ/ ମୁଁ ପୋଷିଲି ଶୁଆ ଗୋରୀ ତୁ ପୋଷିଲୁ ଶାରୀ/ନିତି ନୟନେ ସେ ରୂପ ଦେଖନ୍ତି/ କାଳିଆ ତୋ କଳା କଳା ଡୋଳାକୁ ଚାହିଁ/ଡାହାଣୀ ଫଗୁଣ ଖାଲି ଚାହିଁଲା ମୋ ଶୋଭାକୁ/ ଫଗୁଣରେ ଦେଲୁ ଯେବେ ପହିଲୁ ଛୁଆଁ/ତୋ ଘରକୁ ଯିବା ବାଟ କେତେ ଅଙ୍କା ବଙ୍କାଲୋ/ ପାକଲା ଗାମୁଛା କାନ୍ଧରେ ପକାଇ ଗୋଡ଼ କାଢ଼ିଲି ମୁଁ ହାଟକୁ/ପତର ଝଡ଼େଇ ବସନ୍ତ ଆସିଲା ଆମ୍ବଡାଳେ ଆମ୍ବ କଷି/ଇଚ୍ଛାବତୀ ନଦୀ ମୋର ମନର ମରୁରେ/ଗାଆଁ ଦାଣ୍ଡେ ଚାଲେ ମାଣିକ ପରାଲୋ/ମୁଁ ଯେ ଆଲୋକର ଏକ ଝଡ଼ ।

## ଚଳଚ୍ଚିତ୍ର/ଗ୍ରାମଫୋନ୍ ରେକର୍ଡ ଓ କ୍ୟାସେଟ୍‌ରେ ସ୍ଥାନିତ ଗୀତ

### ଗୀତର ପ୍ରଥମ ଧାଡ଼ି

ମୁଁ ତ ଶ୍ୱଶୁର ଘରକୁ ଜୋଇଁ/ ଚିକିଟା ମାଟିରେ କଣ୍ଢେଇ ଗଢ଼ିଲି/ପ୍ରେମିକା କହୁଛି ମୋତେ ନିଶ ଆଉ ରଖନା/ ଆଗେ ପଢୁଥିଲୁ ଉପନ୍ୟାସ ଖାଲି / ନିତି ଚିଠି ଲେଖିଲେ ବି ଫଟୋଟିଏ ଦଉନା/ ଫଗୁଣ ଗାଆଁରୁ ଚୋରା ଚିଠି ଦେଲୁ ଲାଜକୁଳି ଫୁଲ କୁଆଁରୀ/ଯଉବନ ଏକ ଲତା ଲାଜ ତା'ର ଏକ କଳି/ନିତି ଯାଅ ଏଇ ବାଟେ, ଏଇଠି ତ ଦେଖାହୁଏ/ ସୁଷମାଗୋ ତୁମ ଅଙ୍ଗେଭରା ମଧୁ ଜୋଛନା/ତୋ ଭାଇ ମୋ ଭାଇ ସଙ୍ଗାତ ବସିଲେ ପଣା ସଂକ୍ରାନ୍ତି ଦିନ/ ମହୁଆ ଭାବି ମୋତେ ମହୁ ଲୋଭ ଦେଖାଉଲୋ/ ସାରିଆଲୋ ସାରିଆ, ମନଟାକୁ କରିଦେଲୁ ଗାରିଆ ମାରିଆ/ ସ୍ନେହର ଫଗୁଣ ତୁମେ ଅଲିଅଳି ଲଗନେ/ସୂର୍ଯ୍ୟ ଉଇଁଲେ ପ୍ରଥମେ ଚାହିଁବ ମୋ ପ୍ରିୟାର ଗାଆଁ ଆଡ଼େ/ କାଳିଆ ତୋ କଳା କଳା ଡୋଳାକୁ/ ବଡ଼ ଦାଣ୍ଡେ ଚାଲେ ତବ ନନ୍ଦିଘୋଷ ରଥ/ କାଳିଆରେ କାଳିଆ-ତୁ ମୋର ଗଳା ମାଳିଆ/ ମାଆଲୋ ତୋ ବାହୁପରେ ଅଛି ଯେଉଁ ଶକତି/ ମାଆଗୋ ହିଙ୍ଗୁଳାଇ ବଟବୃକ୍ଷ ବାସିନୀ/ ମହିମାମୟୀଗୋ ମାଆ/ଦରଦିଆ ମନ ତଳେ ମୀନାକରା ପୀରତି/ମୋତେ ତ ହେଲା ସବୁ ମନା/ ତୁମେ କି ଜାଣନା ପ୍ରିୟ ମୁଁ ତୁମ ନାୟିକା ମୁଁ ଯେ ସେଇ ଶକୁନ୍ତଳା କାନନ କଳିକା/ କଳାରେ କୁଶଳା କୋଟି ଚାରୁକଳା ଏଇ ମୋ ଜନମ ଭୂଇଁ ।

## ବେତାର, ଦୂରଦର୍ଶନ ମଞ୍ଚ ନାଟକ ଓ ରୂପକ

### ନାଟକର ନାମ

ଉଲୁପି (ପୌରାଣିକ)/ଅଷ୍ଟବ୍ରଜ (ପୌରାଣିକ)/ଚମ୍ପାବତୀ କଥା (କିମ୍ବଦନ୍ତୀ ମୂଳକ) ସଂଲିମା (ଐତିହାସିକ)/ଶୁକବିଳାସ (ଐତିହାସିକ)/ଅମୃତ ପିପାସା (ପୌରାଣିକ)/ପାଞ୍ଚାଳି (ବ୍ୟଙ୍ଗାତ୍ମକ)/ମାନସୀ ଗବେଷଣାଗାର (ବିଜ୍ଞାନ ତଥ୍ୟଭିତ୍ତିକ)/ ସୂର୍ଯ୍ୟ ଶିଖା (ପ୍ରତୀକାତ୍ମକ)/ଅନ୍ତର୍ଦାହ (ସାମାଜିକ)/ଯୌଥ ସନ୍ତାନ (ବିଜ୍ଞାନ ତଥ୍ୟଭିତ୍ତିକ)/ ମୀନାର ମମି (ସାମ୍ୟବାଦୀ ଧାରା)/ ଯେ ଫୁଲ ଝରିଗଲା (ଆଦିବାସୀ ସମାଜ ଉପରେ ଆଧାରିତ)/ ନାରଦ ଉବାଚ (ବ୍ୟଙ୍ଗାତ୍ମକ ଗୀତିନାଟ୍ୟ)/ସାଗର ମନ୍ଥନ (ପୌରାଣିକ)/ ଏକ ଦୁର୍ଘଟନା ସପକ୍ଷରେ (ସାମାଜିକ)/ବୁଲବୁଲର ସାଏରି (ଐତିହାସିକ କିମ୍ବଦନ୍ତୀ)/ ଭକ୍ତ ମନେଇ (ପୌରାଣିକ କିମ୍ବଦନ୍ତୀ)/ଷଡ଼ବିକାର (ହାସ୍ୟ ରସାତ୍ମକ)/ସେ ଆସୁଛନ୍ତି (ରାଜନୈତିକ ବ୍ୟଙ୍ଗ)/ଦୁର୍ବାସା (ପୌରାଣିକ)/ଶ୍ମଶ୍ରୁଭୂଷଣଙ୍କ ଦାଢ଼ି ଗବେଷଣା (ହାସ୍ୟରସାତ୍ମକ)/ବେଙ୍ଗ କହେ ବେଙ୍ଗୁଲିଲୋ (ଧାରାବାହିକ)/ଲହୁ-ଲୁହ (ସାମାଜିକ) ମଞ୍ଚନାଟକ କୋରେଇରେ/ଚାଣକ୍ୟ (ଐତିହାସିକ) ମଞ୍ଚନାଟକ କୋରେଇରେ/ ସୁନା ଚଷମା (ଶିଶୁନାଟିକା) ଆକାଶବାଣୀ କଟକ/ ପ୍ରକୃତ ବନ୍ଧୁ (ଶିଶୁ ନାଟିକା) ଆକାଶବାଣୀ କଟକ/ ଛଅ ବୋକା (ହାସ୍ୟରସାତ୍ମକ ଶିଶୁ ନାଟିକା)/ଅଜାଙ୍କ ବୈଠକଖାନା (ଶିଶୁନାଟିକା)/ଝୋଲିଆ କବୀର (ପୌରାଣିକ ଶିଶୁନାଟକ)/ମଣ୍ଟୁ (ସାମାଜିକ ଶିଶୁ ନାଟିକା)/ମୋଗଲାଇ ମହାଭାରତ (ଐତିହାସିକ ଶିଶୁନାଟିକା)/ ଟିପୁ ସୁଲତାନ (ଐତିହାସିକ ଶିଶୁନାଟିକା) ।

### 'ରୂପକ' ପ୍ରାଥମିକ ବିଦ୍ୟାଳୟ କାର୍ଯ୍ୟକ୍ରମ, ଆକାଶବାଣୀ କଟକ

ଅଖିଳ ଭାରତୀୟ ରୋଗ ସମ୍ମେଳନ

ମୁଁ ସୂର୍ଯ୍ୟ କହୁଛି

କାମ ନେଇ ଫଳ

ହସିବା ଆସ

ବିଜ୍ଞାନ ଚଟଣି

ବିଚାର ଗଲା ଫସର ଫାଟି

ପେଟୁ ଅଜାଙ୍କ ହଇରାଣ

ବାର ମାସଙ୍କ ଝଗଡ଼ା

ଶୀତ ମାଉସୀ

ଆମ ଗାଁ ହାଟ
ଅଜାଙ୍କ ବୈଠକ ଖାନା
କଥାରେ ପେଞ୍ଚ ଅଛି
ଚାରି ସଙ୍ଗାତ କଥା
କବିର ସମ୍ମାନ (ଶିଶୁ ସଂସାର)
ଜେବୁନ୍ନିସା (ନାରୀମହଲ)
ବନ୍ଦନୀୟା ନାରୀ (ନାରୀମହଲ)
ରଜମଉଜ (ଯୁବବାଣୀ)

## କେତୋଟି ପ୍ରମୁଖ ପୁରସ୍କାର ଓ ସମ୍ମାନ

ପ୍ରଜାତନ୍ତ୍ର ପ୍ରଚ୍ଚର ସମିତି, ଓଡ଼ିଶା ସାହିତ୍ୟ ଏକାଡେମୀ, ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ, ଆକାଶବାଣୀ କଟକ, ଉତ୍କଳ ସାହିତ୍ୟ ସମାଜ, ଓଡ଼ିଆ ଗୀତିକବି ସମାଜ ଭଳି ବହୁ ସରକାରୀ ଏବଂ ବେସରକାରୀ ଅନୁଷ୍ଠାନଦ୍ୱାରା ସମ୍ମାନିତ ଓ ପୁରସ୍କୃତ ହୋଇଛନ୍ତି ନନ୍ଦକିଶୋର ।

## ନନ୍ଦକିଶୋରଙ୍କ ପ୍ରକାଶିତ କେତୋଟି ପ୍ରମୁଖ ପୁସ୍ତକ

| *ପୁସ୍ତକର ନାମ* | *ବିଭାଗ* |
| --- | --- |
| ଟୁଟୁର ରାଇଜ ଫେରି | ଶିଶୁ ସାହିତ୍ୟ |
| ଶିଆଳ ଝିଅର ବାହାଘର | ଶିଶୁ ସାହିତ୍ୟ |
| ଏକ ଦୁଇ ତିନି | ଶିଶୁ ସାହିତ୍ୟ |
| ସବୁ ମଣିଷ ସମାନ | ଶିଶୁ ନାଟିକା |
| ପୁରାଣ କଥା | ଶିଶୁ ସାହିତ୍ୟ |
| ଶ୍ରବଣ କୁମାର | ଶିଶୁ ସାହିତ୍ୟ |
| ଗୀତ ଓ ଗଜଲ | ଗୀତିକବିତା |
| ଇଚ୍ଛାବତୀ ନଦୀ | ଗୀତିକବିତା |
| ନନ୍ଦକିଶୋର ଗୀତି ବିଚିତ୍ରା | ଗୀତିକବିତା |
| ଗୀତିଗୁଚ୍ଛ | ଗୀତିକବିତା |
| ମାନସୀ ଗବେଷଣାଗାର | ଏକାଙ୍କିକା ସମୂହ |
| ଲହୁଲୁହ | ମଞ୍ଚନାଟକ |

| | |
|---|---|
| ଆବୃତ : ଅନାବୃତ | କବିତା |
| ପ୍ରୀତି-ପ୍ରିୟା ପୃଥିବୀ | କବିତା |
| କ୍ୟାସେଟ୍ କନ୍ୟା | (ରମ୍ୟରଚନା) |
| ମୃଣାଳିନୀ | ଅନୁବାଦ |
| କୃଷ୍ଣକାନ୍ତଙ୍କ ଉଇଲ୍ | ଅନୁବାଦ |
| ଢଗଢମାଳିରେ ଚାଷବାସ କଥା | (ନବସାକ୍ଷର ପାଇଁ) |
| ସୁଜାତା ସେବା ସମିତି | (ନବସାକ୍ଷର ପାଇଁ) |
| ଯମପୁରୀର ଜମାନବନ୍ଦି | |

❖✶❖

# ଓଡ଼ିଶୀ ନୃତ୍ୟ ପାଇଁ ସମର୍ପିତ ଶିଳ୍ପୀ
# ସୁଧାକର ସାହୁ

**ମନୋଜ ପଟ୍ଟନାୟକ**

ନୃତ୍ୟ ସଙ୍ଗୀତର ମଧୁମୟ ଧାରାରେ ଭାରତୀୟ ସଂସ୍କୃତି, ଐତିହ୍ୟ, ପରମ୍ପରା ଚିର ଛଳଛଳ । ଆଦିକାଳରୁ ଏଯାବତ୍ ନୃତ୍ୟର ସ୍ଥିତି ଓ ଭିତ୍ତି ଗୌରବଦୀପ୍ତ । ଏହାର ଆଭା ଓ ବିଭା ସମସ୍ତ ଜନମାନସକୁ ଗୋଟେ ଅଫୁରନ୍ତ ଆବେଗିକ ଆନନ୍ଦରେ ପରିପୂର୍ଣ୍ଣ କରେ । ଭାରତୀୟ ନୃତ୍ୟକଳାର ବିଭିନ୍ନତା ସାମଗ୍ରିକ ଭାବରେ ଭାରତୀୟତାକୁ ପ୍ରମାଣିତ କରିବା ସଙ୍ଗେ ସଙ୍ଗେ ଏକ ମହତ୍ତର ଉତ୍ତରଣର ପରିଚୟ ପ୍ରଦାନ କରେ । ଭାରତୀୟ ନୃତ୍ୟଶିଳ୍ପକୁ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ଉତ୍କର୍ଷର ଉଚ୍ଚତମ ସୋପାନରେ ପହଞ୍ଚାଇଥିବା ଅନେକ ନୃତ୍ୟକଳା– ଭାରତ ନାଟ୍ୟମ୍, କୁଚିପୁଡ଼ି, କଥାକଲି, ମଣିପୁରି, ଓଡ଼ିଶୀ ପ୍ରଭୃତି ଉଦାହରଣ ଯୋଗ୍ୟ । ଏହିସବୁ ଶାସ୍ତ୍ରୀୟ ନୃତ୍ୟରେ ଅଭିମନ୍ତ୍ରିତ ନୃତ୍ୟଶିଳ୍ପୀମାନେ ସମ୍ପୂର୍ଣ୍ଣ ଭାବରେ ନିଜକୁ ସମର୍ପିତ କରିଦେଇ ଥାଆନ୍ତି, ସ୍ୱ ସ୍ୱ ରୁଚିର ନୃତ୍ୟକଳାରେ । ବହୁ ଉଚ୍ଚମାନର ନୃତ୍ୟଶିଳ୍ପୀ ଭାରତ ଓ ଭାରତ ବାହାରେ ନିଜର ନିଷ୍ଠା ଓ ଚେଷ୍ଟାର ଆଧାରରେ ନିଜକୁ ଉନ୍ନତ, କୁଶଳୀ ଓ ପରିପକ୍ୱ ନୃତ୍ୟବିତ୍‌ର ପରିଚୟରେ ମର୍ଯ୍ୟାଦାବନ୍ତ ହୋଇଛନ୍ତି । ଭାରତୀୟ ନୃତ୍ୟର ବିକାଶ ଧାରାରେ ଓଡ଼ିଶୀ ନୃତ୍ୟର ଅବଦାନ ଏକ ସ୍ୱତନ୍ତ୍ରତାର ବାର୍ତ୍ତା ବହନ କରେ । ଓଡ଼ିଶାରେ, ଭାରତରେ ତଥା ବିଦେଶରେ ଓଡ଼ିଶୀ ନୃତ୍ୟର ମହତ୍ତ୍ୱକୁ ବିଶ୍ୱବିଦିତ କରିବାରେ ଅନେକ ନୃତ୍ୟଶିଳ୍ପୀଙ୍କ ଅବଦାନ ଓ ଯୋଗଦାନକୁ ସ୍ୱୀକାର କରିବା ସହିତ ସମ୍ମାନ ପ୍ରଦାନ କରିବାର ଧାରା ଏବେ ବି ଚଳଚଞ୍ଚଳ ।

ଏମିତି ଜଣେ ଶିଳ୍ପୀ ଯିଏ ସାତ ଦଶନ୍ଧି ଧରି ନିଜର ସାମଗ୍ରିକ ସତ୍ତାକୁ ଓଡ଼ିଶୀ ନୃତ୍ୟ ପ୍ରତି ସମର୍ପିତ କରି ଅନେକ ଅମଡ଼ା ମାଡ଼ି ଚାଲିଛନ୍ତି, ମନରେ କୌଣସି ପ୍ରାପ୍ତି-

ଅପ୍ରାପ୍ତିର ଆନନ୍ଦ ବା ଅବସୋସ ନାହିଁ, ଅଛି କେବଳ ଓଡ଼ିଶୀ ନୃତ୍ୟର କଳାକୃତିରେ ସାରା ଜୀବନର ତପସ୍ୟାଲବ୍ଧ ସ୍ମୃତି । ଅଳ୍ପ ପାଠପଢ଼ିଥିବା, ନିପଟ ମଫସଲରେ ଜନ୍ମଗ୍ରହଣ କରି ପିଲାଟି ଦିନରୁ ଆଜିଯାଏ ଦୁଃଖର ମୁଦ୍ରାରେ ଜିଇଁଥିବା ଓଡ଼ିଶୀ ନୃତ୍ୟର ମୋହରେ ସମଗ୍ର ଜୀବନକୁ ସମର୍ପଣ କରିଥିବା ଅଶୀତପର ଏହି ଶିଳ୍ପୀଜଣକ ହେଉଛନ୍ତି ନୃତ୍ୟଗୁରୁ ଶ୍ରୀ ସୁଧାକର ସାହୁ । ଢେଙ୍କାନାଳ ଜିଲ୍ଲାର ବଦ୍ୟକାଟେଣୀ (ଗଁଦିଆ)ରେ ୧୯୩୫ ମସିହା ଜାନୁୟାରୀ ଏକ ତାରିଖରେ ଜନ୍ମିଥିବା ଏହି ସୁନାମଧନ୍ୟ ଗୁରୁଙ୍କ ପିତା, ଦୁର୍ଯ୍ୟୋଧନ ସାହୁ ଓ ମାତା, କନକଲତା ସାହୁ । ଲାଉଲଇ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରୁ ପ୍ରାଥମିକ ଶିକ୍ଷାପ୍ରାପ୍ତ ଏହି ମହତ୍ ବ୍ୟକ୍ତି ଜଣକ ଛୋଟ ବେଳରୁ ପ୍ରଥମତଃ ସଙ୍ଗୀତ ପ୍ରତି ଆକର୍ଷିତ ହୋଇଥିଲେ ସମ୍ପୂର୍ଣ୍ଣ ଘରୋଇ ପରିବେଶରୁ । ଘରେ ରାମାୟଣ, ମହାଭାରତ, ଲକ୍ଷ୍ମୀପୁରାଣ ବୋଲା ହେଉଥିବା ବେଳେ ବାଳକ ସୁଧାକରଙ୍କ ଚଞ୍ଚଳ ମନଟି ବୁଝି ନ ବୁଝିଲାର ଦୋଳିରେ ଝୁଲୁଥିଲା । ସାହିତ୍ୟ ଓ ସଙ୍ଗୀତର ନୀରବ ଉପାସକ ପିତା ଦୁର୍ଯ୍ୟୋଧନ ଥିଲେ ସୁଧାକରଙ୍କ ଆଦ୍ୟ ପ୍ରେରଣା ।

ପିତାଙ୍କଠାରୁ ଓଡ଼ିଶୀ ଶିଖିଥିବା ସୁଧାକର, ଉପେନ୍ଦ୍ରଭଞ୍ଜଙ୍କ କବିତାର ଅର୍ଥ ମଧ ପ୍ରାଞ୍ଜଳ ଭାବରେ ବୁଝିବାରେ ଆଗ୍ରହ ରଖୁଥିଲେ । ପିତା-ପୁତ୍ରଙ୍କର ସଙ୍ଗୀତ ଓ ସାହିତ୍ୟ ପ୍ରତି ରୁଚି, ସେତେବେଳେ ସୁଧାକରଙ୍କୁ ସଙ୍ଗୀତମନସ୍କ କରିଥିଲା । ଯାହା ଫଳରେ ଅଚିହ୍ନା ଯୋଗୀଠାରୁ ପ୍ରାପ୍ତ କେନ୍ଦେରାକୁ ବଜେଇ ବଜେଇ ସେ ଗାଉଥିଲେ ନିମାଇଁ ହରିଚନ୍ଦନଙ୍କ 'ଚକାଡ଼ୋଳା କିମ୍ବା ଡକା...', ଏମିତି ଆହୁରି କିଛି । ଏହି ସମୟରେ ଗାଁ ଲାଉଲଇରେ ଗଢ଼ାହେଲା ଗୋଟେ ଯାତ୍ରାଦଳ । ସୁଧାକରଙ୍କ ଆଗ୍ରହ ଗୋଟିପୁଅ ନାଚ ଶିକ୍ଷାପାଇଁ ପ୍ରସାରିତ ହେଲା । ସେ ଗୋଟିପୁଅ ନାଚ ଶିଖିବାରେ ମନୋନିବେଶ କଲେ । ଗାଁରେ ଜଣେ ଗୁରୁଜନ ବାଞ୍ଛାନିଧି ମହାନ୍ତି, ସୁଧାକରଙ୍କୁ କଟକ ଯାଇ ଶିଖିବାକୁ ଉପଦେଶ ଓ ଉତ୍ସାହ ପ୍ରଦାନ କଲେ । ଯାହା ଫଳରେ ବାଳକ ସୁଧାକର କଟକ ଆସି ଲିଙ୍ଗରାଜ ନନ୍ଦଙ୍କ ତତ୍ତ୍ୱାବଧାନରେ ଥିବା ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଯୋଗଦେଲେ । କଟକରୁ ଗାଁ ଓ ଗାଁରୁ କଟକ ଏଭଳି ଯିବାଆସିବା ଲାଗି ରହିଲା ଏବଂ ଶିକ୍ଷାକରିବାର ଆଗ୍ରହ ଧୀରେ ଧୀରେ ବଢ଼ି ବଢ଼ି ଚାଲିଲା । ଅନ୍ନପୂର୍ଣ୍ଣାରେ ନାଟକ 'ପହିଲି ରଜ'ରେ ପ୍ରଥମ ନୃତ୍ୟାଭିନୟ । ପରେ ପରେ ଜନତା ରଙ୍ଗମଞ୍ଚରେ 'ପରକଲମ' ନାଟକରେ ଅଭିନୟ । ନୃତ୍ୟ ଓ ଗୀତ ମାଧମରେ ସେଇ ସମୟର ଦୁଇ ନାମଜାଦା ରଙ୍ଗମଞ୍ଚରେ ସେ ସୁଯୋଗ ପାଇଲେ । ଯାହା ପରବର୍ତ୍ତୀ ଅବସ୍ଥାରେ ଅନେକ ନୃତ୍ୟଗୁରୁଙ୍କ ଆଶୀର୍ବାଦ ପ୍ରାପ୍ତ ହେବାରେ ସହାୟ ହେଲା । ଓଡ଼ିଶୀ ନୃତ୍ୟ ପ୍ରତି ପ୍ରବଳ ଆଗ୍ରହ ତାଙ୍କୁ ବାରମ୍ବାର ଆନ୍ଦୋଳିତ କଲା ।

ସେ ସମୟରେ କେଳୁଚରଣ ମହାପାତ୍ର, ପଙ୍କଜ ଚରଣ ଦାସ, ଦେବପ୍ରସାଦ ଦାସ ପ୍ରଭୃତି ଆଗଧାଡ଼ିର ନୃତ୍ୟଶିଳ୍ପୀ ଓ ନୃତ୍ୟଗୁରୁ । ସୁଧାକରଙ୍କ ନୃତ୍ୟଗୁରୁ ଥିଲେ ଦେବପ୍ରସାଦ ଦାସ, ଯାହାଙ୍କୁ ସେ ନିଜର ଆଦର୍ଶରୂପେ ସମ୍ମାନ ପ୍ରଦର୍ଶନ କରନ୍ତି । ନ୍ୟାସନାଲ ମ୍ୟୁଜିକ୍ ଆସୋସିଏସନ୍‌ରେ ଗୁରୁ ଦେବପ୍ରସାଦଙ୍କ ଠାରୁ ନୃତ୍ୟ ଶିକ୍ଷାର ପର୍ବ ଆରମ୍ଭ ହେଲା । କଟକରେ ଏହି ଗୁରୁଙ୍କ ସାନ୍ନିଧ ତାଙ୍କୁ ଅନନ୍ୟ ଉପଲବ୍ଧି ଆଣି ଦେଲା । ଗୁରୁଙ୍କ ସହ ବିଭିନ୍ନ ସ୍ଥାନକୁ ଯିବାର ସୁଯୋଗ ମଧ୍ୟ ମିଳିଲା ।

ଦିଲ୍ଲୀରେ 'ଶରତ ରାସ' ପ୍ରଦର୍ଶିତ ହେଲା, ରାଷ୍ଟ୍ରପତି ରାଜେନ୍ଦ୍ରପ୍ରସାଦ ପ୍ରଶଂସା କଲେ । ପୁଣି ପରେ ପରେ ପୁରୀରେ ସେଇ 'ଶରତ ରାସ' ପ୍ରଦର୍ଶନ । ଭୂରି ଭୂରି ପ୍ରଶଂସାରେ 'ଶରତ ରାସ' ସମସ୍ତଙ୍କଦ୍ୱାରା ପ୍ରଶଂସିତ ଓ ଆମୋଦିତ ହେଲା । ସୁଧାକରଙ୍କ ଆନନ୍ଦ ମଧ୍ୟ ତତୋଽଧିକ ।

ପୁରୀରେ ଖୋଲିଲା ଓଡ଼ିଶୀ ଗବେଷଣା କେନ୍ଦ୍ର । ନୃତ୍ୟ ଶିକ୍ଷା ପାଇଁ ପ୍ରତିଯୋଗିତାରେ ପ୍ରଥମ ହୋଇ ସୁଧାକର ସଫଳ ହେଲେ । ପୁରୀରେ ବାବାଜୀ ପଦ୍ମନାଭ ଦାସ ଓ ମାହାରୀ ଗୁରୁ ମୋହନ ମହାପାତ୍ରଙ୍କ ପାଖରୁ କିଛି କିଛି ନୃତ୍ୟ ଶିକ୍ଷାକଲେ ଯାହା ତାଙ୍କୁ ପରବର୍ତ୍ତୀ ସମୟରେ ବହୁ ସଫଳତାର ସୂତ୍ର ଆଣି ଦେଲା ।

ସମୟ ଗଡ଼ି ଚାଲିଲା । ଓଡ଼ିଶୀ ନୃତ୍ୟବିତ୍ ଭାବରେ ସେ ଗ୍ରହଣୀୟ ହେଲେ । ନିଜ ଦକ୍ଷତାର ପ୍ରମାଣ ଦେଇ, ବହୁ ପ୍ରଶଂସାର ଅଧିକାରୀ ହେଲେ । ପରବର୍ତ୍ତୀ ଜୀବନରେ ସେ ନୃତ୍ୟଶିକ୍ଷା ଦେବାପାଇଁ, ନିଜକୁ ପ୍ରସ୍ତୁତ କଲେ । ନୃତ୍ୟଗୁରୁ ଭାବରେ ପୁରୀ, କଟକ, ବାଲେଶ୍ୱର, ବାରିପଦା, ସମ୍ବଲପୁର ଆଦି ସହରରେ ବିଭିନ୍ନ ଅନୁଷ୍ଠାନ ମାଧ୍ୟମରେ ନୃତ୍ୟଶିକ୍ଷା ପ୍ରଦାନ କଲେ । ନୃତ୍ୟର ନିଶାରେ ବିଭୋର ସୁଧାକର ଆର୍ଥିକ ଅହଙ୍କାର ପଛରେ ନ ଗୋଡ଼େଇ ନୃତ୍ୟଶିକ୍ଷା ଦେବାର ସାତ୍ତ୍ୱିକ ଆତ୍ମସନ୍ତୋଷ ପ୍ରତି ଧ୍ୟାନ ଦେଲେ । ଫଳତଃ ତାଙ୍କର ପ୍ରଚେଷ୍ଟା, ଅନେକଗୁଡ଼ିଏ ଛାତ୍ରଛାତ୍ରୀ ସୃଷ୍ଟି କରିବାର ମାଧ୍ୟମ ହେଲା । ସଳ୍ପ ପାରିଶ୍ରମିକରେ ଛାତ୍ରଛାତ୍ରୀଙ୍କ ଗଢ଼ଣରେ ନିଜକୁ ନିମଜ୍ଜିତ, ନିୟୋଜିତ କରି ସେ ଓଡ଼ିଶୀ ନୃତ୍ୟ ଶିକ୍ଷା ଦେବାକୁ ଜୀବନର ବ୍ରତ ବୋଲି ଧରିନେଲେ । ଯାହା ତାଙ୍କୁ ଏପର୍ଯ୍ୟନ୍ତ ନୃତ୍ୟ ତପସ୍ୟାରେ ମଗ୍ନ ରଖିପାରିଛି । ଅର୍ଥର ମୋହରେ ଆକର୍ଷିତ ନ ହୋଇ, ନିଜର ପ୍ରାଣସତ୍ତାକୁ ଓଡ଼ିଶୀ ନୃତ୍ୟର ପ୍ରବାହରେ ପ୍ରବାହିତ କରି ସେ ପାଇଛନ୍ତି ଅନେକ ଆନନ୍ଦିତ ମୁହୂର୍ତ୍ତ ।

ଏକ ପ୍ରଶ୍ନର ଉତ୍ତରରେ, ଗୋଟେ ସ୍ମରଣୀୟ ମୁହୂର୍ତ୍ତକୁ ମନେପକେଇ ସେ କୁହନ୍ତି, ତାଙ୍କଦ୍ୱାରା ଶିକ୍ଷାପ୍ରାପ୍ତ ବାଲେଶ୍ୱରର ଛାତ୍ରଛାତ୍ରୀଙ୍କ ପ୍ରଦର୍ଶନରେ, ଭାବୋଚ୍ଛ୍ୱାସରେ କାନ୍ଦି

ପକେଇଥିଲେ ଗୁରୁ ଦେବପ୍ରସାଦ ଦାସ । ସୁଧାକରଙ୍କୁ କୁଣ୍ଢେଇ ପ୍ରଶଂସା କରିବା ଅବସରରେ ସଫଳ ଶିକ୍ଷାର୍ଥୀଙ୍କୁ ଆଶୀର୍ବାଦ ପ୍ରଦାନ କରିଥିଲେ । ସୁଧାକର ମଧ୍ୟ ଗୁରୁଙ୍କ ପାଦଧରି ଲୁହ ଗଡ଼େଇ ଚାଲିଥିଲେ ଅନେକ ଖୁସି ଓ ଆନନ୍ଦର ମଧୁପର୍ବରେ । ଏଇତ ଗୁରୁ-ଛାତ୍ର ସମ୍ପର୍କର ପବିତ୍ର ଶଙ୍ଖଧ୍ୱନି ! ବାଲେଶ୍ୱରରେ ଘଟିଥିବା ଏଇ ସ୍ମରଣୀୟ ମୁହୂର୍ତ୍ତକୁ ଗୁରୁ ସୁଧାକର ତାଙ୍କ ସ୍ମୃତିରେ ସଯତ୍ନେ ସାଇତି ରଖିବାର ଗର୍ବ ଅନୁଭବ କରନ୍ତି ।

ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାରପ୍ରାପ୍ତ ସାଭିମାନୀ ଓଡ଼ିଶୀ ନୃତ୍ୟଗୁରୁ ସୁଧାକର ସାହୁ ଜୀବନରେ ଅର୍ଥପାଇଁ ଅବା ପୁରସ୍କାର ପାଇଁ ଲବି ବା ଖୋସାମତକୁ ଗ୍ରହଣ କରିପାରି ନାହାନ୍ତି ବରଂ ନୃତ୍ୟପାଇଁ ତ୍ୟାଗକୁ ଆପଣେଇଛନ୍ତି । ଦୀର୍ଘ ବର୍ଷଧରି ଓଡ଼ିଶୀ ନୃତ୍ୟ ପାଇଁ ଏକ ତ୍ୟାଗପୂତ ସଂକଳ୍ପବଦ୍ଧ ରାସ୍ତାରେ ଚାଲିବାର ପୁଲକରେ ସେ ଆତ୍ମମଗ୍ନ । କିଛି ପାଇବାର ଲୋଭରେ ସେ ଆତ୍ମସମ୍ମାନକୁ ବଳି ପକେଇ ନାହାନ୍ତି, ବରଂ ଭାଗ୍ୟବାଦୀ ଏ ମଣିଷଟି ଦୁଃଖ ଯନ୍ତ୍ରଣାର କଷଟିରେ ଠିକ୍ ଭାବରେ ଉତୁରି ପାରିଛନ୍ତି । ସେ ସୃଷ୍ଟି କରିଛନ୍ତି ଅନେକ ଛାତ୍ରଛାତ୍ରୀମାନଙ୍କୁ । ସେମାନଙ୍କ ମଧ୍ୟରେ କତିପୟ ଶିକ୍ଷାର୍ଥୀଙ୍କୁ ସେ ମନେ ପକାନ୍ତି– ସେମାନେ ହେଲେ, ବିଜୟଲକ୍ଷ୍ମୀ ମହାନ୍ତି, ମୀନାକ୍ଷୀ ଦତ୍ତ, ଲୀନା ମିଶ୍ର, ଶ୍ରାବଣୀ ରାୟ, ଇତିଶ୍ରୀ ମହାନ୍ତି, ବେଣୀମାଧବ, ଆଲ୍‌ପନା ନାୟକ ପ୍ରଭୃତି । ଆହୁରି ଅନେକ ଛାତ୍ରଛାତ୍ରୀ ସଫଳତାକୁ ଛୁଇଁଛନ୍ତି, ଯେଉଁମାନଙ୍କ ପାଇଁ ସେ ଗର୍ବ ଓ ଆନନ୍ଦ ଅନୁଭବ କରନ୍ତି । ଓଡ଼ିଶୀରେ ବାନ୍ଧନୃତ୍ୟର ସମିଶ୍ରଣ କରିବାରେ ସେ ସଫଳ ହୋଇ ପ୍ରଶଂସିତ ହୋଇଛନ୍ତି । ଏହି ନିରଳସ ସାଧକଙ୍କର ଅବସୋସ ବୋଲି କିଛି ନାହିଁ । ନିଜପାଇଁ ଯାହା ବିହି ନିର୍ଦ୍ଧାରିତ, ସେଥିରେ ସେ ଖୁସି । ସେଇ ସମୟରେ ତାଙ୍କର ସମସାମୟିକମାନଙ୍କୁ ମନେ ପକାନ୍ତି ସେ– ମାୟାଧର ରାଉତ, ରଘୁଦତ୍ତ, ବଟକୃଷ୍ଣ ସେଣ, ରମଣୀରଞ୍ଜନ ଜେନା ପ୍ରଭୃତିଙ୍କୁ ।

ବର୍ତ୍ତମାନର ନୃତ୍ୟଶୈଳୀକୁ ସେ ସହଜରେ ଗ୍ରହଣ କରିପାରୁ ନାହାନ୍ତି । ଉତ୍କର୍ଷ ବୋଲି ପ୍ରଚାରସର୍ବସ୍ୱ ହୋଇ କେତେକ ଓଡ଼ିଶୀ ନୃତ୍ୟକୁ ଅଲଗା ରୂପ ଦେଇ ତାହାର ମୌଳିକତାକୁ ନଷ୍ଟ କରୁଥିବାରୁ ସେ କ୍ଷୋଭ ପ୍ରକାଶ କରନ୍ତି । ଭାଷା, ଭାବ, ରସ ତଥା ଥିଓରି ଜ୍ଞାନ ନୃତ୍ୟର ଏକାନ୍ତ ଆବଶ୍ୟକତା, ଯାହା ଅନେକଙ୍କୁ ଅଜଣା ଥିଲେ ବି ଆଜିକାଲିର ପ୍ରଚାର ଦୁନିଆରେ ସେମାନେ ଶ୍ରେଷ୍ଠ ବୋଲି ପ୍ରତିପାଦିତ କରୁଛନ୍ତି ।

ଜଗନ୍ନାଥଙ୍କ ଉପରେ ପ୍ରବଳ ବିଶ୍ୱାସ ଓ ଆସ୍ଥା ରଖୁଥିବା ଏହି ସାଧାସିଧା ନୃତ୍ୟଶିଳ୍ପୀ ଜଣକ, ଅନେକ ଦୁଃଖରେ ବି ଜିଇଁ ରହିବାର କଳା ଆହରଣ କରିପାରିଛନ୍ତି । ଅଶୀ ବର୍ଷ ବୟସରେ ବିଧବା ବୋହୂ, ନାତିକୁ ଧରି ଜୀବନ ସଂଗ୍ରାମରେ ଜିଇଁବାର ଯୁଦ୍ଧ ଅବ୍ୟାହତ

ରଖିଛନ୍ତି । ଅନେକ ପୁରସ୍କାର ଓ ସମ୍ମାନରେ ସମ୍ମାନିତ ଓ ସମ୍ବର୍ଦ୍ଧିତ ନିରହଙ୍କାରୀ ସଚ୍ଚୋଟ ବର୍ଷୀୟାନ୍ ନୃତ୍ୟବିତ୍ ଜଣକ ପ୍ରଗ୍ଭରସର୍ବସ୍ୱ ପୃଥିବୀରେ ପ୍ରଗ୍ଭରବିମୁଖ ସାର୍ଥକ ମଣିଷର ଆତ୍ମସୁଖରେ ଏବେ ବି ଚଳଚଞ୍ଚଳ ଓ କର୍ମଚଞ୍ଚଳ । ତାଙ୍କର କର୍ମମୟ ଜୀବନର କାର୍ଯ୍ୟଧାରା ଆହୁରି ବିସ୍ତାରିତ, ସମ୍ପ୍ରସାରିତ ହେଉ ଏବଂ ସେ ଦୀର୍ଘାୟୁ ହୋଇ ଭାରତୀୟ ସଂସ୍କୃତି ତଥା ଓଡ଼ିଆ ଜାତୀୟ ଜୀବନର ସ୍ୱାଭିମାନ ଓଡ଼ିଶୀ ନୃତ୍ୟକୁ ଉତ୍ତୁଙ୍ଗ ଶିଖରରେ ପହଞ୍ଚାଇବାରେ ସହାୟ ହୁଅନ୍ତୁ । ତାଙ୍କ ପରିବାରର ଶ୍ରୀବୃଦ୍ଧି ହେଉ ।



## ସଙ୍ଗୀତ ଜଗତର ଅନ୍ୟଜଣେ ତାନ୍‌ସେନ୍

# ତାନ୍‌ସେନ୍ ସିଂ

**ମୀନାକ୍ଷୀ ଦେବୀ**

ଥିଲେ ଜଣେ ପ୍ରସିଦ୍ଧ ଗାୟକ ତାନ୍‌ସେନ୍ । ବିତିଗଲାଣି ଅନେକ ବର୍ଷ । ପ୍ରାୟ ପାଞ୍ଚଶହ ବର୍ଷତଳେ ସମ୍ରାଟ ଆକବରଙ୍କ ରାଜସଭାର ସେ ଥିଲେ ଜଣେ ଖ୍ୟାତନାମା ଗାୟକ । ସଙ୍ଗୀତ ଗାୟନର କଥା ଆଲୋଚନା କରାଗଲେ ଏବେ ମଧ୍ୟ ତାନ୍‌ସେନ୍‌ଙ୍କ ଉଦାହରଣ ଦିଆଯାଏ । ଯିଏ ଗୀତ ଗାଏ ତାକୁ ପ୍ରଶଂସାରେ ହେଉ ଅବା ବ୍ୟଙ୍ଗୋକ୍ତିରେ ହେଉ ତାନ୍‌ସେନ୍‌ଙ୍କ ସହ ତୁଳନା କରାଯାଏ । ଯେମିତି ସଙ୍ଗୀତ ଆଉ ତାନ୍‌ସେନ୍, ଏଇ ଶବ୍ଦ ଦୁଇଟି ଏକ ଓ ଅଭିନ୍ନ । ସର୍ବଶ୍ରେଷ୍ଠ ଗାୟକୀର ଅନନ୍ୟ ଉଦାହରଣ ହେଉଛନ୍ତି 'ତାନ୍‌ସେନ୍' ।

ସେମିତି ଆଉଜଣେ ତାନ୍‌ସେନ୍‌ଙ୍କ କାହାଣୀ । ବଣଜଙ୍ଗଲ ଘେରା ପ୍ରକୃତିର ଗନ୍ତାଘର ନୟାଗଡ଼ ସହର । ଯେମିତି ସବୁଜ ଶାଢ଼ିଟିଏ ତା' ଚାରିପାଖରେ କିଏ ଘେରେଇ ଦେଇଛି ! ଏହି ସୁନ୍ଦର ପରିବେଶରେ ୧୯୪୬ ମସିହା ଏପ୍ରିଲ୍ ତେର ତାରିଖର ପବିତ୍ର ବିଷୁବ ସଂକ୍ରାନ୍ତିରେ ଛୋଟ ପିଲାଟିଏ ଜନ୍ମ ନେଲା । ଆନନ୍ଦରେ ଅଧୀର ହୋଇଉଠିଲେ ପିତା ରୁବେନସିଂ ଏବଂ ମାତା ଗ୍ଲୋରିଆନା । ପିତା ରୁବେନ୍ ଥିଲେ କଳାପ୍ରାଣ, ସଙ୍ଗୀତପ୍ରାଣ । ଗୀତ ଗାଉଥିଲେ । ଶ୍ରୋତାମାନେ ମୁଗ୍ଧ ହେଉଥିଲେ । ପ୍ରସିଦ୍ଧ ଗାୟକ ସାଇଗଲଙ୍କ ସ୍ୱର ସହ ତୁଳନା କରୁଥିଲେ ରୁବେନ୍‌ଙ୍କ ସ୍ୱରକୁ । ସଙ୍ଗୀତପ୍ରାଣ ପିତା ପୁଅର ନାଁ ରଖିଲେ ତାନ୍‌ସେନ୍ । ସ୍ନେହର ଆତିଶାଯ୍ୟରେ ପିତା ରଖିଥିବା ନାଁଟି ଯେମିତି ଉପଯୁକ୍ତ ହୋଇଗଲା ପୁତ୍ର ତାନ୍‌ସେନ୍‌ଙ୍କ ପାଇଁ । ପୁଅ ଯେ ଭବିଷ୍ୟତରେ ଅନ୍ୟଜଣେ 'ତାନ୍‌ସେନ୍' ହୋଇ ଶ୍ରୋତାମାନଙ୍କୁ ସ୍ୱରର କୁହୁକରେ ବାନ୍ଧିରଖିବ, ସଙ୍ଗୀତ ପ୍ରାଣ ପିତା ଯେମିତି ଏହାର ସୂଚନା ପାଇଥିଲେ ।

ପିତା ରୁବେନ୍‌ସିଂଙ୍କର ପ୍ରଥମ ସନ୍ତାନ ଥିଲେ ତାନ୍‌ସେନ୍ । ପିତାଙ୍କ ପୂର୍ବପୁରୁଷ ଥିଲେ ପଞ୍ଜାବୀ ସିଂ ସମ୍ପ୍ରଦାୟର । ଇଂରେଜ ଅମଳରେ ପିତାଙ୍କ ପୂର୍ବଜ ଖ୍ରୀଷ୍ଟିୟାନ ଧର୍ମଗ୍ରହଣ କରିଥିଲେ । ତାନ୍‌ସେନ୍‌ଙ୍କ ଅଜା ଥିଲେ କାଳୀପୂଜକ । ରୁବେନ୍ ସିଂଙ୍କ ପରିବାର ଥିଲା ସବୁଧର୍ମ ଓ ଜାତିର ମିଳନସ୍ଥଳ । ସ୍ନେହ ଓ ସଦିଚ୍ଛା ଭିତରେ ସମୟ କଟୁଥିଲା ସମସ୍ତଙ୍କର । ତାନ୍‌ସେନ୍ ଥିଲେ ପରିବାରର ପ୍ରଥମ ସନ୍ତାନ । ତାଙ୍କ ତଳେ ତିନିଭାଇ ଦୁଇ ଭଉଣୀ । ସମ୍ପ୍ରତି ଭଉଣୀମାନେ ବିବାହ କରି ନିଜନିଜ ପରିବାର ସହ ରହୁଛନ୍ତି । ଭାଇମାନେ ମଧ୍ୟ ନିଜ ନିଜ ବୃତ୍ତିରେ ଅବସ୍ଥାପିତ । ଭିନ୍ନଭିନ୍ନ ସହରରେ ରହୁଛନ୍ତି । ବାଲ୍ୟକାଳର ସ୍ମୃତି କିନ୍ତୁ ନିଆରା । ବାପା, ମା' ଏବଂ ଛଅ ଭାଇଭଉଣୀଙ୍କୁ ନେଇ ତାନ୍‌ସେନ୍‌ଙ୍କ ପରିପୂର୍ଣ୍ଣ ବୈକୁଣ୍ଠ ସମାନ ପରିବାର । ଭାଇଭଉଣୀଙ୍କ ଅଳି ଅର୍ଦ୍ଦଳି ମଧ୍ୟରେ ପିଲାବେଳ ସପ୍ନପରି କଟିଯାଇଛି, ରହିଯାଇଛି ଖାଲି ସ୍ମୃତି । ତାନ୍‌ସେନ୍ ଥିଲେ ପରିବାରର ବଡ଼ପୁଅ । ସାଭାବିକ ଭାବରେ ପରିବାରର ସମସ୍ତଙ୍କର ଅତି ଅଲିଅଳ, ଅତି ଆଦରର । ଅଜା ମଧ୍ୟ ତାଙ୍କୁ ବହୁତ ଭଲ ପାଉଥିଲେ ।

ବାପା ରୁବେନ୍ ସିଂ ଥିଲେ ସଂସ୍କୃତି ସମ୍ପନ୍ନ ବ୍ୟକ୍ତିତ୍ୱ । ଗୀତ ଗାଉଥଲେ ଅତି ସୁଲଳିତ ସ୍ୱରରେ । ଫୁଟବଲ୍ ଖେଳୁଥିଲେ । ଫୁଟବଲ୍ କୋଚିଂ ଦେଉଥିଲେ । ହାଇସ୍କୁଲରେ ଶିକ୍ଷକତା କରୁଥିଲେ । ପରିବାରରେ ଅଭାବ ନ ଥିଲା । ମଧ୍ୟବିତ୍ତ ପରିବାରରେ ସମସ୍ତେ ସ୍ନେହ ଶ୍ରଦ୍ଧାରେ ବାନ୍ଧି ହୋଇରହିଥିଲେ । ସେତେବେଳେ ନୟାଗଡ଼ର ଜଣାଶୁଣା ପରିବାର ମଧ୍ୟରେ ରୁବେନ୍ ସିଂଙ୍କ ପରିବାରର ନାଁ ଥିଲା । ନୟାଗଡ଼ର ରାଜା କୃଷ୍ଣଚନ୍ଦ୍ର ମାନଧାତା ନିଜ ସନ୍ତାନମାନଙ୍କ ନାଁରେ ବିଭିନ୍ନ ଅନୁଷ୍ଠାନ ସ୍ଥାପନ କରିଥିଲେ । ପୁତ୍ର ବ୍ରଜେନ୍ଦ୍ରଙ୍କ ନାଁରେ ସେ ସ୍ଥାପନ କରିଥିଲେ ବ୍ରଜେନ୍ଦ୍ର ହାଇସ୍କୁଲ । ବ୍ରଜେନ୍ଦ୍ର ହାଇସ୍କୁଲ ପାଖରେ ଥିବା ୟୁ.ପି. ସ୍କୁଲରେ ତାନ୍‌ସେନ୍‌ଙ୍କ ପ୍ରାଥମିକ ଶିକ୍ଷା ଆରମ୍ଭ ହେଲା । ସାଙ୍ଗସାଥୀ ଜୁଟିଲେ । ସ୍କୁଲ ଜୀବନ ଆନନ୍ଦରେ କଟିଗଲା, ଖୁସି ମନରେ ପଦେ ପଦେ ଗୀତ ଗାଆନ୍ତି । ସ୍ୱରର ଲାଳିତ୍ୟରେ ବାପା' ମା' ଆଉ ଶୁଣୁଥିବା ଲୋକେ ଖୁସି ହୁଅନ୍ତି । ଷଷ୍ଠ ଶ୍ରେଣୀରେ ପଢୁଥାନ୍ତି ତାନ୍‌ସେନ୍ । ପାଟିରେ ଟାକରା ଫୁଟାଇ ତାଳଦେବା ଆରମ୍ଭ କରନ୍ତି । ପୁଅର ସଙ୍ଗୀତ ପ୍ରତି ଆଗ୍ରହ ଦେଖି ବାପା ମା' ଆଶ୍ଚର୍ଯ୍ୟ ହୁଅନ୍ତି । ମା' କୁହନ୍ତି ପୁଅଙ୍କ ପାଇଁ ଢୋଲକଟିଏ କିଣିଦିଅ । ସେ ବଜେଇବା ଶିଖିବ ।

ଢୋଲକ କିଣା ହେଲା । କିଶୋର ତାନ୍‌ସେନ୍ ବାଜା ବଜେଇବାର ମଜା ନେଲେ । ଘରେ ରେଡ଼ିଓ ଥିଲା । ସେତେବେଳେ ଓଡ଼ିଶାକୁ ଟି.ଭି. ଆସି ନ ଥାଏ । ରେଡ଼ିଓରୁ ଗୀତ ଶୁଣି ତାନ୍‌ସେନ୍ ମନେ ରଖନ୍ତି । ଗୁଣୁଗୁଣୁ ହେଇ ଗୀତ ଗାଆନ୍ତି । କିନ୍ତୁ ଆନୁଷ୍ଠାନିକ ଭାବରେ କୌଣସି ସଙ୍ଗୀତ ଶିକ୍ଷା ଆରମ୍ଭ ହୋଇ ନ ଥିଲା ତାନ୍‌ସେନ୍‌ଙ୍କର । ହାଇସ୍କୁଲରେ

ପଢ଼ିଲାବେଳେ ସାଙ୍ଗମାନଙ୍କ ସାଙ୍ଗରେ ମାଛ ଧରିବା, ଡୁଡୁ ଫୁଟ୍‌ବଲ୍ ଖେଳିବାରେ ତାନ୍‌ସେନ୍ ବେଶୀ ଆନନ୍ଦ ପାଉଥିଲେ । ମାଛ ଧରିବାବେଳେ ବି ରେଡ଼ିଓ ବଜେଇ ଶୁଣନ୍ତି । ରେଡ଼ିଓରେ ଦେଉଥିବା ଉଭୟ ଓଡ଼ିଆ ଓ ହିନ୍ଦୀ ଗୀତ ଶୁଣି ଶୁଣି ମନେରଖନ୍ତି । ସାଙ୍ଗମାନଙ୍କ ଆଗରେ ଗାଇ ବାହା ବା ନିଅନ୍ତି । ଶ୍ରୋତାମାନଙ୍କ ତାଳିମାଡ଼ ତାଙ୍କୁ ଆହୁରି ଉତ୍ସାହ ଦିଏ । ସେତେବେଳେ ତାନ୍‌ସେନ୍‌ଙ୍କର ସବୁଠାରୁ ପ୍ରିୟ ଗୀତ ଥିଲା, 'ଦୁନିଆରେ ସମୟର ନଈ ବହିଯାଏ ।' ବହୁତ ହିନ୍ଦୀ ଗୀତ ତାଙ୍କର ମୁଖସ୍ଥ ହୋଇଯାଇଥିଲା । ଓଡ଼ିଆଗୀତ ଭିତରେ 'ଉଡ଼ି ଉଡ଼ି ଉଡ଼ି ଯାଆରେ ଉଡ଼ି', ମୟୂରୀ ଗୋ ତୁମ ଆକାଶେ ମୁଁ ଦିନେ, ଗୀତ ଦୁଇଟିକୁ ସେ ବାରମ୍ବାର ଗାଉଥିଲେ । ହାଇସ୍କୁଲରେ ପଢ଼ିଲା ବେଳେ, ତାନ୍‌ସେନ୍‌ଙ୍କୁ ଟାଇଫଏଡ୍ ହୋଇଥିଲା । ଅସୁସ୍ଥତା ହେତୁ ସେ ବହୁତ ଦୁର୍ବଳ ହୋଇପଡ଼ିଲେ । ଗୀତ ଗାଇବା କେତେଦିନ ପାଇଁ ବନ୍ଦ ରହିଲା ।

ହାଇସ୍କୁଲରେ ପଢ଼ିଲାବେଳେ ସ୍କୁଲ ଡ୍ରାମାରେ ଗୀତ ଗାଇ ସମସ୍ତଙ୍କୁ ଅଭିଭୂତ କରୁଥିଲେ କିଶୋର ତାନ୍‌ସେନ୍ । ଏବେ ବି ଅଣସ୍ତରୀ ବର୍ଷ ବୟସରେ ଅତୁଟ ରହିଛି ସେ ସ୍ୱରର ଲାଳିତ୍ୟ । ସେ ସ୍ୱରର ଲାଳିତ୍ୟ ଛୁଇଁଯାଇଛି ପୃଥିବୀର କୋଣ ଅନୁକୋଣକୁ । ମନ୍ତ୍ରମୁଗ୍ଧ କରିଛି ଶ୍ରୋତାମାନଙ୍କୁ । ସେ ସ୍ୱରର ପରିଚୟ ମିଳିଥିଲା ତାଙ୍କ ପିଲାବେଳରୁ । କିନ୍ତୁ ନିଜ ପ୍ରତିଭାକୁ ଚିହ୍ନି ତା'ର ଉତ୍ତରୋତ୍ତର ଉନ୍ନତି ପାଇଁ ଯେଉଁ ସାଧନା କରିବା ଆବଶ୍ୟକ, ସେଇ ଛୋଟବେଳୁ ସେ ବିଷୟରେ ତାନ୍‌ସେନ୍ ସଚେତନ ନ ଥିଲେ । ସେତେବେଳେ ଛୋଟ ସହର ନୟାଗଡ଼ରେ ମଧ୍ୟ ସେପରି ସଚେତନତା ପ୍ରାୟ ନ ଥିଲା । କିନ୍ତୁ ତାନ୍‌ସେନ୍‌ଙ୍କ ପିତା ରୁବେନ୍ ସିଂ ଥିଲେ ଜଣେ ବହୁମୁଖୀ ପ୍ରତିଭାସମ୍ପନ୍ନ ବ୍ୟକ୍ତି । ସାଇଗଲ୍‌ଙ୍କ ପରି ସୁଲଳିତ ସ୍ୱର । ଫୁଟବଲ୍ ଖେଳରେ ତାଙ୍କର ଥିଲା ଅସାଧାରଣ ଦକ୍ଷତା । କିମ୍ବଦନ୍ତୀ ପୁରୁଷ ବିଜୁ ପଟ୍ଟନାୟକଙ୍କର ସେ ଥିଲେ ଫୁଟବଲ୍ କୋଚ୍ । ତାସ୍‌ର ବ୍ରିଜ୍‌ଖେଳରେ ସେଥିରେ ଓସ୍ତାଦ । ନୟାଗଡ଼ର ରାଜା ତାଙ୍କୁ ବ୍ରିଜ୍‌ଖେଳ ପାଇଁ ସବୁବେଳେ ଆମନ୍ତ୍ରଣ କରୁଥିଲେ ।

ଏହି ମହାନ୍ ପ୍ରତିଭାଧାରୀ ପିତା ରୁବେନ୍ ସିଂ ହିଁ ଥିଲେ ତାନ୍‌ସେନ୍‌ଙ୍କର ପ୍ରଥମ ସଙ୍ଗୀତ ଗୁରୁ । ସଙ୍ଗୀତର ଆଦ୍ୟ ଓଁକାର ସେ ପିତାଙ୍କଠାରୁ ଶିଖିଥିଲେ । ପିତା କେତେବେଳେ ସ୍ନେହରେ ତ କେତେବେଳେ ମୃଦୁ ଅନୁଶାସନ ଭିତରେ ତାନ୍‌ସେନ୍‌ଙ୍କୁ ସଙ୍ଗୀତ ଶିଖେଇବା ଆରମ୍ଭ କଲେ । ଅସାଧାରଣ ପ୍ରତିଭାଧାରୀ ପୁତ୍ର ତାନ୍‌ସେନ୍ ଅନାୟସରେ ପିତାଙ୍କଠାରୁ ସଙ୍ଗୀତର ଆଦ୍ୟ ବର୍ଣ୍ଣବୋଧ ସବୁ ଖୁବ୍ ଶୀଘ୍ର ଶିଖିବାକୁ ଲାଗିଲେ । ଏଇ ପ୍ରଚଣ୍ଡ ପ୍ରତିଭାର ପରିଚୟ ମିଳିଲା ସେଇ ବାଲ୍ୟକାଳର ଚପଳାମିରେ ଗାଉଥିବା ସଙ୍ଗୀତର ଲାଳିତ୍ୟରୁ । ରେଡ଼ିଓ ଶୁଣିଶୁଣି ଖୁବ୍ ଶୀଘ୍ର ମନେ ରଖିଲେ ଗୀତ ସବୁ । ସ୍କୁଲରେ ପଢ଼ିଲାବେଳେ ଓଡ଼ିଆ

ଗୀତ ଅପେକ୍ଷା ବେଶୀ ହିନ୍ଦୀଗୀତ, ବିଶେଷ ଭାବରେ ହିନ୍ଦୀ ସିନେମାର ଗୀତ ସେ ଗାଉଥିଲେ ।

ହାଇସ୍କୁଲରୁ ଉତ୍ତୀର୍ଣ୍ଣ ହେବା ପରେ ନୟାଗଡ଼ କଲେଜରେ ନାମ ଲେଖାହେଲା ତାନ୍‌ସେନ୍‌ଙ୍କର । ଗୀତ ଗାଇବାର ନିଶା ଦିନକୁ ଦିନ ବଢୁଥାଏ । କେବଳ ସଙ୍ଗୀତ ନୁହେଁ ଅଭିନୟରେ ମଧ୍ୟ ଦକ୍ଷତା ଥିଲା ତାନ୍‌ସେନ୍‌ଙ୍କର । ହାସ୍ୟରସାତ୍ମକ ଭୂମିକାରେ ଅଭିନୟ କରିବାକୁ ତାନ୍‌ସେନ୍ ଭଲ ପାଉଥିଲେ । ତାଙ୍କ ଅଭିନୟରେ ଦର୍ଶକ ଅଭିଭୂତ ହେଉଥିଲେ । ତାଳିମାଡ଼ରେ ଘରିଆଡ଼େ କମ୍ପି ଉଠୁଥିଲ । ଗୀତ ଗାଇଲେ ତ ଶ୍ରୋତାମାନେ ନିସ୍ତବ୍ଧରେ ଏକ ମନ, ଏକ ପ୍ରାଣ ହୋଇ ଶୁଣୁଥିଲେ ।

ସଙ୍ଗୀତକୁ ନେଇ ଅତୀତର ବହୁ ମଧୁରସ୍ମୃତି ଚିର ଅଭୁଲା ହୋଇରହିଯାଇଛି ତାନ୍‌ସେନ୍‌ଙ୍କ ଜୀବନରେ । ସେ ସବୁ ମଧୁର ସ୍ମୃତିକୁ ସ୍ମରଣକରି ସେଇ ଅଭୁଲା ଅତୀତରେ ସେ ହଜିଯାଆନ୍ତି । ଦୃଶ୍ୟପରେ ଦୃଶ୍ୟ ଯେମିତି ଆଖି ଆଗରେ ଭାସିଉଠେ । ସେମିତି ଗୋଟିଏ ସ୍ମରଣୀୟ ଘଟଣା ଗୀତ ଓ ସଙ୍ଗୀତକୁ ନେଇ । ତାନ୍‌ସେନ୍ ପଢୁଥାନ୍ତି ଆଇ.ଏ. ଶ୍ରେଣୀରେ । କଲେଜ ଡ୍ରାମାରେ ତାଙ୍କୁ ମିଳିଥାଏ ଭିକାରୀର ରୋଲ୍ । ଭିକାରୀ ବେଶରେ ତାନ୍‌ସେନ୍ ଏତେ ବାସ୍ତବ ଅଭିନୟ କରୁଥାନ୍ତି ଯେ, କେହି ତାଙ୍କୁ ଚିହ୍ନି ପାରୁ ନ ଥାନ୍ତି, ଅନ୍ଧଭିକାରୀ ବେଶରେ ତାନ୍‌ସେନ୍ ଆଉ ଜଣେ ପିଲାର ହାତଧରି ମଞ୍ଚକୁ ପ୍ରବେଶ କଲେ । ଅନ୍ୟ ପିଲାଟିର ହାତରେ ଥିଲା ଭିକ୍ଷାଥାଳୀ । ତାନ୍‌ସେନ୍‌ଙ୍କ କଣ୍ଠରୁ ଝରିଯାଉଥିଲା 'ଦୁନିଆରେ ସମୟର ନଈ ବହିଯାଏ' ଗୀତଟି । ଅପୂର୍ବ ସେ ସ୍ୱର ! ଅପୂର୍ବ ସେ ସମୟର ଭାବାବେଗ ! ଦର୍ଶକ ସ୍ୱପ୍ନାବିଷ୍ଟ ହୋଇବସିଥାନ୍ତି । କେହି କେହି ଟଙ୍କା, ପଇସା ପକାଉଥାନ୍ତି ଭିକ୍ଷାଥାଳରେ । ସେ ସମୟର ସବୁଠାରୁ ଲୋକପ୍ରିୟତାର ଶୀର୍ଷରେ ଥିଲା 'ଦୁନିଆରେ ସମୟର ନଈ ବହିଯାଏ' ଗୀତଟି । ସମୟର ନଈ ତ ନିରବଧି ବହିଚାଲିଛି । କିନ୍ତୁ ସେ ଦିନ ସେଇ ମୁହୂର୍ତ୍ତରେ ସମୟ ନଈର ଯେମିତି ଗତିପଥ ବନ୍ଦ ହୋଇଯାଇଥିଲା, ତାନ୍‌ସେନ୍‌ଙ୍କ ଜୀବନ୍ତ ଅଭିନୟରେ । ତାଙ୍କ ସ୍ୱରର କରୁଣ-ମଧୁର ମୂର୍ଚ୍ଛନାରେ ଦର୍ଶକମାନଙ୍କ ଆଖିରୁ ଲୁହ ଝରିବାକୁ ଲାଗିଥିଲା । ଗୀତ ସରିଲା ବେଳକୁ ସଭାସ୍ଥଳୀ ସମବେତ କରତାଳିରେ ପରିପୂର୍ଣ୍ଣ ହୋଇସାରିଥିଲା ।

କଲେଜର ଅଧ୍ୟକ୍ଷ ସେଦିନ ତାନ୍‌ସେନ୍‌ଙ୍କ ଗୀତ ଶୁଣି ଅଭିଭୂତ ହୋଇଥିଲେ । କିନ୍ତୁ ସେ ତାନ୍‌ସେନ୍‌ଙ୍କୁ ଚିହ୍ନି ନ ଥିଲେ । ଏଇ ସମୟରେ ଗୋଟିଏ ମଜାଦାର ଘଟଣା ଘଟିଥିଲା । ତାନ୍‌ସେନ୍ ମେକ୍‌ଅପ୍ ଛଡ଼ାଇବାକୁ ଗ୍ରୀନ୍‌ରୁମ୍‌ର ପଛପଟକୁ ଯାଇଥାନ୍ତି । ଅଧ୍ୟକ୍ଷ ନାଟକର ନିର୍ଦ୍ଦେଶକଙ୍କୁ ପଚାରିଥିଲେ 'ସେ ଭିକାରି ରୋଲ୍ କରୁଥିବା ପିଲାଟିକୁ କେଉଁଠୁ ଆଣିଥିଲ ? ବଢ଼ିଆ ଗୀତ ବୋଲୁଛି ।'

ନିର୍ଦ୍ଦେଶକ ଯେତେବେଳେ ତାନ୍‌ସେନ୍‌ଙ୍କ ପରିଚୟ ଦେଲେ, ଅଧ୍ୟକ୍ଷଙ୍କ ଖୁସିର ସୀମା ରହିଲାନି । ତାନ୍‌ସେନ୍ ରୁବେନ୍ ସିଂଙ୍କ ପୁଅ ବୋଲି ଶୁଣି ଅଧ୍ୟକ୍ଷ ବହୁତ ଖୁସି ହେଲେ । ଖୁସିରେ ତାନ୍‌ସେନ୍‌ଙ୍କୁ କୁଣ୍ଢେଇ ପକାଇଲେ ଅଧ୍ୟକ୍ଷ ।

ବହୁଦିନ ପରେ ବି ସେ ଦୃଶ୍ୟକୁ ଭୁଲି ପାରିନାହାନ୍ତି ତାନ୍‌ସେନ୍ । ଅଭୁଲା ଅତୀତ ବହୁ ମଧୁର ସ୍ମୃତିରେ ଭରି ରହିଛି । କଲେଜରେ ପଢ଼ିଲା ବେଳକୁ ଜଣେ ପ୍ରତିଭାବାନ୍ ଗାୟକ ଭାବରେ ତାନ୍‌ସେନ୍‌ଙ୍କ ଖ୍ୟାତି ବ୍ୟାପିଗଲାଣି । ବିଭିନ୍ନ ସ୍ଥାନରୁ ଗୀତ ଗାଇବା ପାଇଁ ଅନୁରୋଧ ଆସୁଥିଲା । ସେତେବେଳେ ଗାଁ ଗହଳରେ ନାଟକ ଓ ସଙ୍ଗୀତର ବଡ଼ ଆଦର ଥିଲା । ପ୍ରତି ଗାଁରେ ପ୍ରାୟ ପ୍ରତିବର୍ଷ ନାଟକ ଅଭିନୀତ ହେଉଥିଲା । ନାଟକରେ ଗୀତର ଆବଶ୍ୟକତା ଥିଲା । ତାନ୍‌ସେନ୍ ବୋଲଗଡ଼, ମାଣିକଗୋଡ଼ା ଗାଁରେ ଗୀତ ଗାଇବାକୁ ଯାଇଥିଲେ । ଶ୍ରୋତାମାନଙ୍କୁ ମୁଗ୍ଧ କରିଥିଲେ ନିଜ ସ୍ୱରର ମାଧୁର୍ଯ୍ୟରେ ।

ଖାଲି ଗାୟକ ଭାବରେ ନୁହେଁ, ଜଣେ ଖେଳାଳୀ ଭାବରେ ମଧ୍ୟ ତାନ୍‌ସେନ୍ ବେଶ୍ ଦକ୍ଷତା ହାସଲ କରିଥିଲେ । କ୍ରିକେଟ୍ ଖେଳରେ ସେ ଥିଲେ ଜଣେ ଅଲ୍‌ରାଉଣ୍ଡର୍ । ଉଭୟ ବ୍ୟାଟିଂ ଓ ବୋଲିଂରେ ସେ ଥିଲେ ସୁଦକ୍ଷ । ସେ ଥିଲେ ଜଣେ ଦକ୍ଷ ଫୁଟ୍‌ବଲ୍ ଖେଳାଳୀ ।

ବି.ଏ. ପାସ୍ କଲାପରେ ତାନ୍‌ସେନ୍‌ଙ୍କୁ ଚାକିରି ମିଳିଗଲା । ଓଡ଼ିଶା ଫରେଷ୍ଟ ଡେଭଲପ୍‌ମେଣ୍ଟ କରପୋରେସନ୍‌ରେ ସେ ୧୯୭୨ ମସିହାରେ ଯୋଗ ଦେଲେ । କଟକରେ ଚାକିରି । କଟକରେ ଆସି ରହିଲେ । ଜୀବନର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହେଲା ଏଇ ସଂସ୍କୃତି ସମ୍ପନ୍ନ କଟକ ସହରରେ । ଅନ୍ନପୂର୍ଣ୍ଣା ଥିଏଟର ଏବଂ ବିଭିନ୍ନ ପ୍ରୋଗ୍ରାମରେ ଗୀତ ଗାଇବାକୁ ତାଙ୍କୁ ନିମନ୍ତ୍ରଣ ଆସିଲା । ପ୍ରଶଂସା ମିଳିଲା, ମିଳିଲା କରତାଳି ।

ସହସ୍ର କରତାଳିକୁ ଆପଣେଇ ଆଗକୁ ଆଗକୁ ଲୋକପ୍ରିୟତାର ଦିଗରେ ତାନ୍‌ସେନ୍ ଆଗେଇ ଚାଲିଲେ । ସେଇ ସମୟର ଘଟଣାଟିଏ ତାନ୍‌ସେନ୍‌ଙ୍କ ଜୀବନର ମଧୁର ସ୍ମୃତିଟିଏ ହୋଇ ରହିଗଲା । ବିଭିନ୍ନ ଅନୁଷ୍ଠାନକୁ ଗୀତଗାଇବାପାଇଁ ନିମନ୍ତ୍ରଣ ପାଇବା ଭିତରେ ତାନ୍‌ସେନ୍‌ଙ୍କୁ ନାରୀ ସେବାସଦନରେ ଗୀତ ଗାଇବାର ନିମନ୍ତ୍ରଣ ମିଳିଲା । କେତୋଟି ଲୋକପ୍ରିୟ ଗୀତ ସହିତ ତାନ୍‌ସେନ୍ ଗାଇଲେ ତାଙ୍କର ପ୍ରିୟଗୀତ 'ମୟୂରୀ ଗୋ ତୁମ ଆକାଶେ ମୁଁ ଦିନେ' । ଗୀତଟି ଥିଲା ମହମ୍ମଦରଫିଙ୍କ କଣ୍ଠରେ 'ଅରୁନ୍ଧତୀ' ଚଳଚ୍ଚିତ୍ରର । ଗୀତଟି ଶ୍ରୋତାମାନଙ୍କ ମନକୁ ଛୁଇଁଗଲା । ସେହି ସଭାରେ ଉପସ୍ଥିତ ଥିଲେ ଯୁବତୀ ରେବିକା । ରେବିକା ଅଭିଭୂତ ହୋଇଗଲେ ତାନ୍‌ସେନ୍‌ଙ୍କ ସ୍ୱରର ମାଧୁର୍ଯ୍ୟରେ । ତାଙ୍କ ଆଖିରେ ଏଇ ଯୁବଗାୟକଙ୍କ ପାଇଁ ଥିଲା ନୀରବ ପ୍ରଶଂସା । ସେ ଆଖିର ଭାଷା ପଢ଼ି ପାରିଲେ ତାନ୍‌ସେନ୍ । ସେଇଠାରୁ ପ୍ରଥମ ପ୍ରଣୟ... । ଭଲପାଇବାର ରଜ୍ଜୁ ଦିନକୁ ଦିନ ଦୃଢ଼ ହେବାରେ ଲାଗିଲା ।

ତା'ପରେ ବିବାହ । ୧୯୭୩ ମସିହା ନଭେମ୍ବର ମାସ ୨୭ ତାରିଖରେ ୟୁନିୟନ୍ ଚର୍ଚ୍ଚ ପରିସରରେ ରେବିକାଙ୍କ ସହିତ ତାନ୍‌ସେନ୍‌ଙ୍କ ବିବାହ ସମ୍ପନ୍ନ ହେଲା । ସଙ୍ଗୀତ ସାଧନା ସହିତ ଯୁଗଳ ଜୀବନର ସଙ୍ଗୀତ ସମସ୍ୱରରେ ପ୍ରତିଧ୍ୱନିତ ହେବାକୁ ଲାଗିଲା । ପ୍ରଥମେ ୧୯୭୪ ମସିହାରେ ତାନ୍‌ସେନ୍‌ଙ୍କୁ ମିଳିଲା 'ଅନୁତାପ' ଚଳଚ୍ଚିତ୍ରରେ ଗୀତଗାଇବାର ସୁଯୋଗ । ଅନୁତାପ ଚଳଚ୍ଚିତ୍ରରେ ଦୁଇଟି ଗୀତ ସେ ଗାଇଥିଲେ ।

ସେ ସ୍ମୃତିକୁ ସ୍ମରଣ କରନ୍ତି ତାନ୍‌ସେନ୍ । 'ଅନୁତାପ' ଚଳଚ୍ଚିତ୍ରର ନିର୍ଦ୍ଦେଶକ ଥିଲେ 'ଜଲାଲ୍ ଆଦେନି ।' ଏହି ଚଳଚ୍ଚିତ୍ରରେ ସେ ଯେଉଁ ଦୁଇଟି ଗୀତ ଗାଇଥିଲେ, ସେ ମଧ୍ୟରୁ 'ନୁପୂର କାହିଁକି ମୁଁ ବାନ୍ଧିଲି' ଗୀତଟି ସେତେବେଳେ ସୁପର୍‌ହିଟ୍ ହୋଇଥିଲା ଏବଂ ସେଇ ଚଳଚ୍ଚିତ୍ରରେ ତାନ୍‌ସେନ୍ ଗାଇଥିବା ଅନ୍ୟ ଗୀତଟି 'ମୁଁ ତୁମକୁ ଭଲପାଏ ଲୁଚିଲୁଚିକା' ମଧ୍ୟ ସୁପରହିଟ୍ ହୋଇ ତାଙ୍କ ଲୋକପ୍ରିୟତା ବହୁଗୁଣରେ ବଢ଼େଇ ଦେଲା । ଏହାପରେ ଆଉ ପଛକୁ ଫେରି ଚାହିଁନାହାନ୍ତି ତାନ୍‌ସେନ୍ । ଗୋଟିଏ ପରେ ଗୋଟିଏ ଚଳଚ୍ଚିତ୍ରରୁ ଆମନ୍ତ୍ରଣ ଆସିଲା ଗୀତଗାଇବାକୁ । ସର୍ବମୋଟ ସତେଇଶିଟି ଚଳଚ୍ଚିତ୍ରରେ ଗୀତ ଗାଇ ସେ ଶ୍ରୋତାମାନଙ୍କୁ ମୁଗ୍ଧ କରିଛନ୍ତି । ଶେଷ ଚଳଚ୍ଚିତ୍ରଟି ଥିଲା, 'ତୁମେ ଇ ସାଥୀ ମୋର ।'

ତାନ୍‌ସେନ୍ ଗୀତ ଗାଇଥିବା ଦ୍ୱିତୀୟ ଚଳଚ୍ଚିତ୍ରଟି ଥିଲା 'ସଉତୁଣୀ' । ଏହି ଚଳଚ୍ଚିତ୍ରରେ ବାସୁଦେବ ରଥ ସଙ୍ଗୀତ ନିର୍ଦ୍ଦେଶନା ଦେଇଥିଲେ । ସଉତୁଣୀରେ ଥିଲା ଦୁଇଟି ଗୀତ ଗାଇବାର ସୁଯୋଗ । 'କାଉ ଧାନ ଖାଇଲା ବୋଲି' ଏବଂ 'ଗୋରୀ ଦେଖିଲି କାଲି ଦେଖିଲି' ଗୀତ ଦୁଇଟି ମଧ୍ୟ ଶ୍ରୋତାଙ୍କ ମନକୁ କିଣିନେଲା । 'ଚିହ୍ନା ଅଚିହ୍ନା' ଚଳଚ୍ଚିତ୍ରରେ 'ଝୁମୁକା ତୁ ତ ଟିକିଏ ହଲେଇ ଦେ' ଏବଂ ଯୁଗ୍ମ ଭାବରେ 'ଚାନ୍ଦ ନା ତୁମେ ତାରା' ଗୀତ ଦୁଇଟି ତାଙ୍କୁ ଅଶେଷ ଲୋକପ୍ରିୟତା ଓ ପ୍ରସିଦ୍ଧି ଆଣିଦେଲା । ଏବେ ମଧ୍ୟ ଚିର ଅଭୁଲା ହୋଇରହିଛି ଏଇ ଗୀତଗୁଡ଼ିକ । ପରେ 'ସମର ସଲିମ ସାଇମନ୍' ଚଳଚ୍ଚିତ୍ରରେ ସେ ଗାଇଲେ 'ମୁଁ ଯେ ଏକ ପାଗଳ ଭଅଁର' ଏବଂ 'ଆରତୀ' ଚଳଚ୍ଚିତ୍ରରେ ଗାଇଲେ 'ଆରେ ମୋ' ନଚକବାଲୀ' । ଏହିପରି ଗୋଟିଏ ପରେ ଗୋଟିଏ ଗୋଟିଏ ଗୀତ ସେ ଗାଇ ଚାଲିଲେ । ତାଙ୍କ କଣ୍ଠର କୁହୁକ ଶ୍ରୋତାମାନଙ୍କୁ ଏ ଯାବତ ବାନ୍ଧିରଖିଛି, ସବୁବେଳ ପାଇଁ ବାନ୍ଧିରଖିଥିବ ।

ଚଳଚ୍ଚିତ୍ର ଗୀତ ସହିତ ସେ ଗାଇଲେ ରେକର୍ଡ ଏବଂ କ୍ୟାସେଟ୍‌ର ଗୀତ । ଶ୍ରୋତାମଣ୍ଡଳୀରେ ଚହଳ ପଡ଼ିଗଲା । ତାନ୍‌ସେନ୍‌ଙ୍କ 'ମିତା ତୁମେ ଭଲପାଇ ଭୁଲି ତ ଯିବନି ମତେ', ସାଗର କୂଳେ ଦିନେ ଦେଖିଲି ଝିଅଟିଏ', ଗୀତ ଦୁଇଟି ଶ୍ରୋତାଙ୍କ ହୃଦୟରେ ରହିଗଲା । ଏଇ ଗୀତ ସହିତ କ୍ୟାସେଟ୍ ଓ ରେକର୍ଡରେ ଶତାଧିକ ଗୀତ ଗାଇଲେ ତାନ୍‌ସେନ୍ । ଅଧିକାଂଶ ଗୀତ ଲୋକପ୍ରିୟ ହେଲା । ଆଜି ମଧ୍ୟ ସେଇ ଗୀତଗୁଡ଼ିକ

ଶ୍ରୋତାମାନଙ୍କର ଅତିପ୍ରିୟ ହୋଇରହିଛି । ତାନ୍‌ସେନ୍ 'ପୂଜାଚନ୍ଦନ' ଫିଲ୍ମରେ ଗାଇଥିବା "ଯାହାକୁ ମୁଁ ଏତେ ଭଲ ପାଉଛି... ତାହା ଲାଗି ଆଜି ଗୀତ ଗାଉଛି" ଲୋକପ୍ରିୟତାର ଶୀର୍ଷକୁ ସ୍ପର୍ଶ କରିଛି । ଏହି ଗୀତଗୁଡ଼ିକ ଆକାଶବାଣୀ ଓ ଦୂରଦର୍ଶନରେ ବାରମ୍ବାର ପ୍ରଚାରିତ ହୋଇଛି ଏବଂ ଗାୟକ ଭାବରେ ତାଙ୍କର ଲୋକପ୍ରିୟ ବୃଦ୍ଧି କରିଛି ।

ଦୂରଦର୍ଶନ ବିଭିନ୍ନ ସଙ୍ଗୀତ କାର୍ଯ୍ୟକ୍ରମରେ ତାନ୍‌ସେନ୍ ବିଗ୍ଚରକ ଭାବରେ ଯୋଗଦେଇଛନ୍ତି । ଶ୍ରୋତଙ୍କ ଅନୁରୋଧରେ ନିଜର ଲୋକପ୍ରିୟ ଗୀତଗାଇ ଷ୍ଟେଜ୍ ସୋକୁ ଅଧିକ ସଙ୍ଗୀତମୟ କରିଦେଇଛନ୍ତି ।

ଆକାଶବାଣୀର ସ୍ୱୀକୃତିପରେ ତାନ୍‌ସେନ୍ ଗାଇଛନ୍ତି ବହୁ ଆଧୁନିକ, ଭଜନ, ପଲ୍ଲୀସ୍ୱର ଓ ଦେଶାତ୍ମବୋଧକ ଗୀତ । ଆକାଶବାଣୀର ସେ ଜଣେ ଅତ୍ୟନ୍ତ ଲୋକପ୍ରିୟ କଣ୍ଠଶିଳ୍ପୀ । ଆକାଶବାଣୀରେ ସେ ଗାଇଥିବା ଅଧିକାଂଶ ଗୀତ ଲୋକପ୍ରିୟତା ଅର୍ଜନ କରିଛି । ବିଶେଷ ଭାବରେ ପଲ୍ଲୀସ୍ୱର ଗୀତ ତାଙ୍କ କଣ୍ଠରେ ଅପୂର୍ବ ଲୋକପ୍ରିୟତା ଅର୍ଜନ କରିଛି । 'ବାହାଘର ମଜା ବାହାରୁଛି ଏବେ ମୁଣ୍ଡ ହୋଇଗଲା ଚନ୍ଦା' ଏଇ ଗୀତଟି ଥିଲା ବିଶିଷ୍ଟ ଗୀତିକବି ଗୌର ପଟ୍ଟନାୟକଙ୍କ ରଚନା ଏବଂ ତାନ୍‌ସେନ୍‌ଙ୍କର ଏକ ଲୋକପ୍ରିୟ ଗୀତ ।

ତାନ୍‌ସେନ୍ ଜାତୀୟ ତଥା ଆନ୍ତର୍ଜାତୀୟ କ୍ଷେତ୍ରରେ ସଙ୍ଗୀତରେ ସୁନାମ ଅର୍ଜନ କରିଛନ୍ତି । ଭାରତର ବିଭିନ୍ନ ସ୍ଥାନରୁ ନିମନ୍ତ୍ରଣ ପାଇ ସଙ୍ଗୀତ ପରିବେଷଣ କରିଛନ୍ତି । ୨୦୦୬ ମସିହାରେ ଆମେରିକାର ଓଡ଼ିଆ ସଙ୍ଗଠନ 'ଓଷା'ର ନିମନ୍ତ୍ରଣ କ୍ରମେ ଗୀତଗାଇବାକୁ ଯାଇ ତାନ୍‌ସେନ୍ କାର୍ଲିଫର୍ଣ୍ଣିଆ, ନିୟୁୟର୍କ ପ୍ରଭୃତି ବିଭିନ୍ନ ସ୍ଥାନରେ ଗୀତପ୍ରୋଗ୍ରାମ କରିଥିଲେ । ସେଇଠାରେ ସେ ପାଇଥିଲେ 'ମେଲୋଡ଼ି କିଙ୍ଗ୍' ସମ୍ମାନ । ଏଇ ମେଲୋଡ଼ି କିଙ୍ଗଙ୍କ ଗୀତକୁ ସ୍ୱଦେଶ ପରି ବିଦେଶରେ ମଧ୍ୟ ବହୁ ଆଦର ମିଳିଲା । ଏତେ ଆନନ୍ଦ ଭିତରେ ଦୁଃଖଦ ଖବରଟିଏ ମଧ୍ୟ ଅପେକ୍ଷା କରିଥିଲା । ଏକ ଦୁରାରୋଗ୍ୟ ବ୍ୟାଧିରେ ଆକ୍ରାନ୍ତ ହୋଇ ପତ୍ନୀ ରେବିକା ମୃତ୍ୟୁଶଯ୍ୟାରେ ଶୋଇଥିଲେ । ଡାକ୍ତରଖାନାରେ ଚିକିତ୍ସା ଚାଲିଥିଲା । ପିଲାମାନେ କାନ୍ଦି କାନ୍ଦି ଫୋନ୍ କରୁଥିଲେ । ଶୀଘ୍ର ଫେରିବାପାଇଁ ଦିନ ଗଣୁଥିଲେ ତାନ୍‌ସେନ୍ ।

ଶେଷରେ ତାନ୍‌ସେନ୍ ଫେରିଲେ ଜନ୍ମମାଟିକୁ । ରୋଗଶଯ୍ୟାରେ ତାଙ୍କୁ ଯେମିତି ଅପେକ୍ଷା କରି ରହିଥିଲେ ଆଦରର ପତ୍ନୀ ରେବିକା । ଅନୁରୋଧ କଲେ ସେଇ ପ୍ରିୟ ଗୀତ 'ମୟୂରୀ ଗୋ ତୁମ ଆକାଶେ' ଗାଇ ଶୁଣେଇବାପାଇଁ । ଆଖିରୁ ଧାରଧାର ଲୁହ ଝରୁଥାଏ, ତଥାପି ତାନ୍‌ସେନ୍ ଧୈର୍ଯ୍ୟ ଧରି ଗୀତଟି ଗାଇଲେ । ପତ୍ନୀଙ୍କର ଶେଷ ଇଚ୍ଛା ପୂରଣ ହେଲା । ୨୦୦୭ ମସିହା ଜାନୁୟାରୀ ମାସ ୧୨ ତାରିଖରେ ରେବିକାଙ୍କର ମୃତ୍ୟୁ ହେଲା ।

ତାନ୍‌ସେନ୍‌ଙ୍କ ପରିପୂର୍ଣ୍ଣ ପରିବାରରେ ବଜ୍ରପାତ ହେଲା ଯେମିତି । ତାନ୍‌ସେନ୍‌ଙ୍କର ଦୁଇପୁଅ ଗୋଟିଏ ଝିଅ । ସମସ୍ତେ ଉଚ୍ଚଶିକ୍ଷିତ । ବଡ଼ପୁଅ ଶୋଭନ୍ କମ୍ପାନୀରେ ଚାକିରି କରନ୍ତି । ସାନପୁଅ ଉତ୍ତମ ଏମ୍.ବି.ଏ. ପାଶ କରିଛନ୍ତି । ବାପାଙ୍କ ପରି ସୁନ୍ଦର ଗୀତ ଗାଆନ୍ତି । ଝିଅ ସୁପ୍ରିୟା ଆନିମେସନ୍‌ରେ ଏଡ଼ିଟିଂ କରି ରାଜ୍ୟବାହାରେ ଅଛନ୍ତି ।

ଶ୍ରୋତାର କରତାଳି ହିଁ ଜଣେ ଗାୟକର ଶ୍ରେଷ୍ଠ ପୁରସ୍କାର । ଶ୍ରୋତାର ପ୍ରଶଂସା ଫୁଲ ପରି ଝରି ପଡ଼ିଛି ତାଙ୍କ ଉପରେ । କରତାଳିରେ ପୁରି ଉଠିଛି ସଭାସ୍ଥଳ । ଅଜସ୍ର ପ୍ରଶଂସା ସହିତ ସେ ପାଇଛନ୍ତି ବହୁ ଅନୁଷ୍ଠାନର ସମ୍ମାନ, ସମ୍ବର୍ଦ୍ଧନା ଓ ପୁରସ୍କାର । ରାଜୀବ ଗାନ୍ଧୀ ଫୋରମ ତରଫରୁ ସେ ପାଇଛନ୍ତି ରାଜୀବ ଗାନ୍ଧୀ ସଦ୍‌ଭାବନା ପୁରସ୍କାର । ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଏବଂ ରାଉରକେଲା ଭଞ୍ଜ କଲ୍‌ଚୁରାଲ୍ ଟ୍ରଷ୍ଟର ସମ୍ବର୍ଦ୍ଧନା ସେ ପାଇଛନ୍ତି । 'ଦିଗନ୍ତ ଫାଉଣ୍ଡେସନ୍' ତରଫରୁ ସେ ପାଇଛନ୍ତି 'ବିଶ୍ୱବିଭୂତି' ସମ୍ମାନ । ଏହାବ୍ୟତୀତ ଅକ୍ଷୟ ମହାନ୍ତି, ସିକନ୍ଦର ଆଲାମ୍ ସ୍ମୃତି କମିଟି ତରଫରୁ ସେ ସମ୍ମାନିତ ହୋଇଛନ୍ତି । ଜଗତସିଂହପୁରର କଲ୍ଲୋଳପୁର 'ଦୁଃଖୀଶ୍ୟାମ ମଙ୍ଗରାଜ ସ୍ମୃତି କମିଟି, ଏବଂ ଭୁବନେଶ୍ୱର ଇନ୍‌କମ୍‌ଟ୍ୟାକ୍ସ ରିକ୍ରିଏସନ୍ କ୍ଲବ ତରଫରୁ ସେ ସମ୍ବର୍ଦ୍ଧିତ ହୋଇଛନ୍ତି । ବିଦେଶ ଗସ୍ତ କାଳରେ ଓଡ଼ିଆ ଆସୋସିଏସନ୍ ତାଙ୍କୁ 'ମେଲୋଡ଼ି କିଙ୍ଗ୍ ଭାବରେ ସମ୍ମାନିତ କରିଛି । ସାନ୍‌ଫ୍ରାନ୍‌ସିସ୍କୋର ଓଡ଼ିଆ ଆସୋସିଏସନ୍ ତାଙ୍କୁ 'ଗୁରୁକୁଳ' ସମ୍ମାନ ଦେଇଛି । ସେଇ ବିଦେଶର ଏକ ପ୍ରତିଷ୍ଠିତ ଅନୁଷ୍ଠାନ ତାଙ୍କୁ 'ଆୱାର୍ଡ଼ ଅଫ୍ ଏକ୍ସିଲେନ୍‌ସି' ପ୍ରଦାନ କରିଛି । ମୋଗଲ ଦରବାରର ଗାୟକ ତାନ୍‌ସେନ୍‌ଙ୍କ ଗାୟନଶୈଳୀକୁ ସମଗ୍ର ଭାରତବର୍ଷର ସଙ୍ଗୀତଜ୍ଞମାନେ ପ୍ରଶଂସା କଲାପରି ତାନ୍‌ସେନ୍ ସିଂଙ୍କର ପ୍ରଶଂସାପତ୍ରର ତାଲିକା ଅତ୍ୟନ୍ତ ପ୍ରଲମ୍ବିତ ।

ତାନ୍‌ସେନ୍ ଗାଇଥିବା ପ୍ରଥମ ଚଳଚ୍ଚିତ୍ର ଥିଲା 'ଅନୁତାପ' ଯାହା ତାଙ୍କୁ ପ୍ରଶଂସା ଓ ପ୍ରତିଷ୍ଠା ଆଣି ଦେଇଥିଲା । ବହୁ ଛାତ୍ରଙ୍କୁ ସେ ସଙ୍ଗୀତ ଶିକ୍ଷା ଦେଇଛନ୍ତି । 'ଗୀତ୍ ବାହାର' ନାମରେ ଏକ ମେଲୋଡ଼ି ସଂସ୍ଥା ସେ ଗଢ଼ିଛନ୍ତି । ସଙ୍ଗୀତ ତାଙ୍କ ଜୀବନ । ସେ କହନ୍ତି– 'ଆକାଶବାଣୀର ଶିଳ୍ପୀ ହିସାବରେ ଜୀବନ ଥିଲା ଯାଏ ସେ ଗାଉଥିବେ ଏବଂ ଗାଉଥିବା ଯାଏ ସେ ଜିଇଁଥିବେ ।' ସଙ୍ଗୀତକୁ ଛାଡ଼ି ସେ ବଞ୍ଚିପାରିବେନି, ଏକଥା ସେ ନିର୍ଦ୍ୱନ୍ଦରେ ପ୍ରକାଶ କରନ୍ତି । ଯେଉଁଦିନ ଗୀତ ଗାଇବାପାଇଁ ନିମନ୍ତ୍ରଣ ଆସେ, ସେ ଦିନଟି ତାଙ୍କୁ ତାଙ୍କ ଜନ୍ମଦିନର ଖୁସି ଆଣିଦିଏ ।

ସମୟର ନଈ ଯଥା ରୀତି ବହିଚାଲିଛି । ତାନ୍‌ସେନ୍ ପହଞ୍ଚିଛନ୍ତି ଅଣସ୍ତରୀ ବର୍ଷ ବୟସରେ । ବହୁତ କିଛି ପାଇଛନ୍ତି । ହଜେଇଛନ୍ତି ବହୁତ କିଛି । ତଥାପି ଅଣସ୍ତରୀ ବର୍ଷ ବୟସରେ ବି ମନରେ ଭରିରହିଛି ଯୁବ ସୁଲଭ ଉଦାମତା । ସ୍ୱରରେ ଭରିରହିଛି ପୂର୍ବର

ସେ ଲାଳିତ୍ୟ ଆଉ ମାଧୁର୍ଯ୍ୟ । କାରଣ ସେ ସଙ୍ଗୀତର ଉପାସକ । ସଙ୍ଗୀତକୁ ଭଲ ପାଆନ୍ତି ଓ ଭଲପାଆନ୍ତି କଣ୍ଠଶିଳ୍ପୀମାନଙ୍କୁ । ଅନ୍ୟ ଶିଳ୍ପୀଙ୍କର ବୈଶିଷ୍ଟ୍ୟକୁ ସେ ପ୍ରଶଂସା କରନ୍ତି । ନିମାଇଁ ହରିଚନ୍ଦନ ଓ ଭିକାରୀବଳଙ୍କ ଭକ୍ତିଗୀତର ଭାବ, ପ୍ରଣବ ପଟ୍ଟନାୟକଙ୍କ ଗୁରୁଗମ୍ଭୀର ସ୍ୱର, ସିକନ୍ଦର ଆଲାମଙ୍କ ପିଲାଳିଆ ମଧୁର ସ୍ୱର ଓ ଅନ୍ୟସମସ୍ତ କଣ୍ଠଶିଳ୍ପୀଙ୍କ ସ୍ୱର ତାଙ୍କୁ ଅଭିଭୂତ କରେ । ମହମ୍ମଦ ରଫିଙ୍କର ସେ ସବୁଠାରୁ ବଡ଼ ପ୍ରଶଂସକ । ଦୂରଦର୍ଶନ ଅପେକ୍ଷା ଆକାଶବାଣୀର ଅଧିକ ପ୍ରଶଂସା କରନ୍ତି ତାନ୍‌ସେନ୍ । ତାଙ୍କ ମତରେ ଆକାଶବାଣୀ ଗୋଟିଏ ଅବଗୁଣ୍ଠନବତୀ ନାରୀ ପରି ସବୁବେଳେ ସୁନ୍ଦର । ଆକାଶବାଣୀରେ ପୁନଃ ପ୍ରଚାରିତ ହେଉଥିବା ପୁରୁଣା ଗୀତ ସବୁ ନୂଆ ପରି ଲାଗେ । ମଞ୍ଚଠାରୁ ଆରମ୍ଭ କରି ଆକାଶବାଣୀ, ଦୂରଦର୍ଶନ, ଚଳଚ୍ଚିତ୍ର, କ୍ୟାସେଟ୍ ଜଗତ ପ୍ରଭୃତି ପ୍ରତ୍ୟେକ ମାଧ୍ୟମରେ ଗୀତ ଗାଇ ତାନ୍‌ସେନ୍ ସଫଳ ହୋଇଛନ୍ତି । ମଞ୍ଚରେ ଗୀତଗାଇ ସେ ଶ୍ରୋତାଙ୍କୁ ଅଭିଭୂତ କରିଛନ୍ତି ।

ତାନ୍‌ସେନ୍‌ଙ୍କ ନାମ ଶୁଣିଲେ ସ୍ମରଣକୁ ଆସନ୍ତି ଆକବରଙ୍କ ରାଜସଭାର ସେଇ ମହାନ ସଙ୍ଗୀତଜ୍ଞ ତାନ୍‌ସେନ୍, ଯିଏ ଦୀପକ୍ ରାଗରେ ଗାୟନ କରି ପ୍ରଦୀପକୁ ପ୍ରଜ୍ୱଳିତ କରିପାରୁଥିଲେ, 'ମେଘମହ୍ଲାର' ରାଗରେ ଗୀତଗାଇ ବର୍ଷା ସୃଷ୍ଟି କରିପାରୁଥିଲେ, 'ମୃଗରଞ୍ଜନୀ' ରାଗରେ ଗୀତ ଗାଇ ମୃଗମାନଙ୍କୁ ଆକୃଷ୍ଟ କରି ଉଦାହରଣ ସୃଷ୍ଟି କରିପାରୁଥିଲେ । ଏଇ ବିଂଶ ଶତାବ୍ଦୀର କଣ୍ଠଶିଳ୍ପୀ ତାନ୍‌ସେନ୍ ସିଂ ଯାହାଙ୍କର ସଙ୍ଗୀତ ଶ୍ରୋତାର ହୃଦୟରେ ଆବେଗର ବର୍ଷା କରିପାରେ, ଭାବର ପ୍ରଦୀପ ପ୍ରଜ୍ୱଳିତ କରିପାରେ, ସେଇ ପ୍ରତିଭାବାନ୍ କଣ୍ଠଶିଳ୍ପୀଙ୍କୁ 'ଅନ୍ୟଜଣେ ତାନ୍‌ସେନ୍' ଭାବରେ ନାମିତ କରିବା ଯଥାର୍ଥ ହେବ, ଏହା ନିଃସନ୍ଦେହରେ କୁହାଯାଇପାରେ ।



# ହାସ୍ୟ ଅଭିନେତା
# ସୁରେଶ ଚନ୍ଦ୍ର ବଳ (ବାଙ୍କୁ)

**ସୁବ୍ରତ ପ୍ରିୟବ୍ରତ ମହାନ୍ତି**

ସମୟ ବାରମାସୀ ଚଢେଇ ଭଳି ରଙ୍ଗ ବଦଳାଏ । ମୁଁ କେଉଁ ଦୂର ଅତୀତର କଥାରୁ ଆରମ୍ଭ କରୁ ନାହିଁ । ଏଇ ମାତ୍ର ୬୦ବର୍ଷ ପାଖାପାଖିର ପୁରୁଣା କଥା । କିନ୍ତୁ ଆଜିର ସମୟ ଆଉ ସେ ସମୟ ଭିତରେ ପ୍ରଭେଦ ବାରି ହୋଇ ପଡୁଛି । ଆଜିର ପିଲାଟି ନିଜର ବସ୍ତାନୀ ଧରି ବିଦ୍ୟାଳୟକୁ ଯିବା ଠାରୁ ଫେରିବା ପର୍ଯ୍ୟନ୍ତ ତା' ଉପରେ ନଜର ରହୁଛି । ଅଭିଭାବକ ଓ ବିଦ୍ୟାଳୟ କର୍ତୃପକ୍ଷ, ଉଭୟଙ୍କର ନଜର ପିଲା ମାନଙ୍କ ଉପରେ । କିନ୍ତୁ ସେତେବେଳେ ପିଲାମାନଙ୍କ ଉପରେ ଏତେ ତୀକ୍ଷ୍ଣ ନଜର ନ ଥିଲା । ଏମିତି ପିଲା ଥିଲେ ଯିଏ ବହି ବ୍ୟାଗ ଧରି ସ୍କୁଲକୁ ଯାଉଥିଲେ ସତ, କିନ୍ତୁ ସ୍କୁଲ ବଦଳରେ ପହଞ୍ଚୁ ଥିଲେ କେଉଁ ନଦୀପଠାରେ । ପ୍ୟାଣ୍ଟ୍ ଭିତରେ ଥାଏ ବହି । ତା' ଉପରେ ଶାର୍ଟ । ମୁଁ କଟକ ସହରର କଥା କହୁଛି । କଟକର ପିଲାମାନେ ଦଳ ଦଳ ହୋଇ ଚାଲୁଥିଲେ ମହାନଦୀକୂଳ ଆଡେ । ମହାନଦୀ କୂଳର ଝଙ୍କା ବରଗଛରେ ଚଢିବା ନଦୀପଠାରୁ ଭଇଁଚକୋଳି ତୋଳିବା ଇଏ ଥିଲା ସ୍କୁଲ ସମୟ ଭିତରର କାର୍ଯ୍ୟସୂଚୀ । ଘରେ ପହଞ୍ଚିବା ପରେ ବାପା ମାଆ ଭାବୁଥିଲେ ପୁଅ ବଡ କ୍ଲାନ୍ତ ହୋଇ ବିଦ୍ୟାଳୟରୁ ଫେରିଲା । ଅଭିଭାବକଙ୍କ ଆଖିରେ ଆଖିଏ ଆଶା ବସା ବାନ୍ଧିଥାଏ ପୁଅର ଭବିଷ୍ୟତକୁ ନେଇ । ଜୀବନରେ ସେ ନିଶ୍ଚୟ ଜଣେ ବଡ ମଣିଷ ହେବ । ସମାଜରେ ନାଁ କରିବ । ଏଇଠି ଆସୁଛି ପିଲା ମାନଙ୍କୁ ଗଢିବାର ଅନୁଚିନ୍ତା । ଥୋକେ ପିଲା ଦାୟିତ୍ୱବାନ୍ ଭାବରେ ବିଦ୍ୟାଳୟକୁ ଯାଉଥିଲେ । ଥୋକେ ମହାନଦୀ କୂଳରେ ଡେଉଁ ଥିଲେ । ତା'ହେଲେ କଣ ଦାୟିତ୍ୱବାନ୍ ଭାବରେ ବିଦ୍ୟାଳୟ ଯାଉଥିବା ସବୁପିଲା ସମାଜରେ ପ୍ରତିଷ୍ଠିତ ଏବଂ ମହାନଦୀ କୂଳରେ ଡେଉଁଥିବା ପିଲାମାନଙ୍କ ପାଇଁ ସମାଜର ଆଗଧାଡିରେ ସ୍ଥାନ ନ ଥିଲା ? ଏଇଠି ଭୁଲ ହେଇଯାଏ ମଣିଷ ଗଢିବାର ସୂତ୍ର । ବିଦ୍ୟାଳୟରୁ ଲୁଚି ନଦୀକୂଳରେ ଡେଉଁଥିବା

ଅନେକ ଛାତ୍ର ମଧ୍ୟ ନିଜକୁ ପ୍ରତିଷ୍ଠିତ କରିପାରିଛନ୍ତି ସମାଜରେ । ସମାଜ ସମ୍ମାନ ଦେଇଛି ସେମାନଙ୍କ ପ୍ରତିଭାକୁ । ଯାହା ଘଟିଛି ବିଶିଷ୍ଟ ଚଳଚିତ୍ର ଅଭିନେତା ସୁରେଶ ବଳଙ୍କ ଜୀବନରେ ।

ହାସ୍ୟ ଏବଂ ଚରିତ୍ର ଅଭିନେତା ସୁରେଶ ବଳ, ଚଳଚ୍ଛିତ୍ର ଜଗତରେ ଅତି ପରିଚିତ 'ବାଙ୍କୁ' ଭାଇ ଭାବରେ । ବାଙ୍କୁଙ୍କ ପୈତୃକ ଗାଁ ଥିଲା ମାହାଙ୍ଗା ଅଞ୍ଚଳର ନହଙ୍ଗ । କିନ୍ତୁ ତାଙ୍କ ଜନ୍ମ କଟକ ସହରରେ । ବାପା ସନାତନ ବଳ ଥିଲେ ମୋହରୀର । ସ୍ୱଳ୍ପ ରୋଜଗାର ମଧ୍ୟରେ ସନାତନ ବଳ ନିଜର କୁଟୁମ୍ବ ଚଳାଇ କଟକର ଦରଘାବଜାରରେ ଘର ଖଣ୍ଡିଏ କରିପାରିଥିଲେ । ଯେଉଁଠି ଜନ୍ମ ହୋଇଥିଲେ ସୁରେଶ ବଳ । ସନାତନ ଏବଂ ଲୀଳାବତୀ ବଳଙ୍କର ୩ ପୁଅ ୩ ଝିଅଙ୍କ ମଧ୍ୟରେ ବାଙ୍କୁ ଭୂମିଷ୍ଠ ହୋଇଥିଲେ ୫ମ ସନ୍ତାନ ଭାବରେ । ସୁରେଶ ବଳଙ୍କ ଶୈଶବ କଟିଛି ଦରଘାବଜାରର ମୁସଲିମ୍ ସାହି ଭିତରେ । ବାଲ୍ୟ ବନ୍ଧୁ ଥିଲେ ମୁସଲିମ୍ ପିଲାମାନେ । ତେଣୁ ସୁରେଶ ବଳ ଯଦି କଟକୀ ଉର୍ଦ୍ଦୁ କହିବେ, କେହି ଧରି ପାରିବେ ନାହିଁ ସେ କଟକୀ ମୁସଲମାନ ନୁହନ୍ତି । ଶୈଶବରେ ବିଦ୍ୟାଳୟ ଯିବା ଆରମ୍ଭ ହୋଇଥିଲା ଦରଘାବଜାର ୟୁ.ପି ସ୍କୁଲରୁ । ତା' ପରେ ପ୍ୟାରୀମୋହନ ଏକାଡେମୀ । ଯେଉଁଠୁ ଆରମ୍ଭ ହୋଇଥିଲା ସୁରେଶ ବଳଙ୍କ ଚଗଲାମି । ଖୁବ୍ ଖୋଲା ଭାବରେ ସୁରେଶ ବଳ କୁହନ୍ତି- ଯଦିଓ କାରଣ ମୁଁ କହିପାରିବି ନାହିଁ; କିନ୍ତୁ ପିଲା ଦିନେ ପାଠ ପ୍ରତି ଆଗ୍ରହ ନ ଥିଲା । ସ୍କୁଲରୁ ଲୁଚି ଆମେ କେତେଜଣ ଚାଲିଯାଉଥିଲୁ ମହାନଦୀ କୂଳକୁ । ଗଡଗଡିଆ ଘାଟ ପାଖରେ ଥିଲା ବିରାଟ ଝଙ୍କା ବରଗଛ । ତା' ଉପରେ ଚଢି ବସୁଥିଲୁ । ନଦୀ ପଠାକୁ ଯାଇ ଭଇଁଚକୋଳି ତୋଳୁଥିଲୁ । ସ୍କୁଲ ଛୁଟି ହେବା ସମୟରେ ଘରକୁ ଫେରୁ ଥିଲୁ । ଘରେ ଭାବୁ ଥିଲେ ପୁଅ ସ୍କୁଲରୁ ଫେରିଲା । ଚଗଲାମି ଏତିକିରେ ସିମିତ ନ ଥିଲା । ସ୍କୁଲରେ ପିଲାମାନଙ୍କୁ କ୍ଷୀର ଦିଆଯାଉଥିଲା । ଟିଫିନ୍ ମଧ୍ୟ ଦିଆଯାଉଥିଲା । ତାଙ୍କରି ଦଳ ଭିତରୁ କେହି ଜଣେ ମୁଣ୍ଡରୁ ଚୁଟି ଛିଣ୍ଡାଇ , କିମ୍ବା କାଠି ଖଣ୍ଡେ ଖାଇବାରେ ପକାଇ ଦେଉଥିଲେ । ତା ପରେ ପାଟିକରୁଥିଲେ ହେଇ ଚୁଟି ବାହାରିଲା, କାଠିବାହାରିଲା ଇତ୍ୟାଦି । ସେଥିପାଇଁ ଟିଫିନ୍ ଦେଉଥିବା ବାବାଜୀ ସାହୁ ତାଙ୍କୁ ଅଧିକ କିଛି ଟିଫିନ୍ ଦିଅନ୍ତି । ଏମିତି ଏମିତି କୌଣସି ଭାବରେ ଶ୍ରେଣୀ ଉତୀର୍ଣ୍ଣ ହୋଇଯାଉଥିଲେ । କିନ୍ତୁ ୮ମ ଶ୍ରେଣୀ ଡେଇଁବା କଷ୍ଟ ହେଲା । ସେଥିପାଇଁ ପ୍ୟାରୀମୋହନ ଏକାଡେମୀ ଛାଡି ବାଙ୍କୁ ଆସିଥିଲେ ରାଜାବଗିଚା ଉଚ୍ଚବିଦ୍ୟାଳୟକୁ । ରାଜାବଗିଚା ଉଚ୍ଚବିଦ୍ୟାଳର ଅନୁଭୂତି ଭିନ୍ନ ଧରଣର । ସେତେବେଳେ କଟକ ସହରରେ ଥିଲା କଚ୍ଚା ପାଇଖାନା । ଶନିବାର ସକାଳୁଆ ସ୍କୁଲ ହେବାବେଳକୁ ସ୍କୁଲ ପାଖ ଏକ କାନ୍ଥ ଉପରେ ଧାଡି ହୋଇ ଥୁଆ ହୋଇଥାଏ ମଳ ଭର୍ତି ବାଲଟିଗୁଡ଼ିକ । ଭୀଷଣ ଗନ୍ଧ ହୁଏ । ବାଙ୍କୁଙ୍କ ସାଙ୍ଗମାନେ ପାଟିତୁଣ୍ଡ କରନ୍ତି । ସ୍କୁଲ ଛୁଟି ହୋଇଯାଏ । ଫୁଟବଲ ଖେଳ ହୁଏ । ପାଠଘର ଶୂନ । ତେଣୁ ପୁନର୍ବାର ବାଙ୍କୁଙ୍କୁ ସେ ସ୍କୁଲ ଛାଡି ଯିବାକୁ ପଡିଲା କଟକ ଠାରୁ ଅନତି ଦୂରରେ ଅବସ୍ଥିତ ତେଲଦିଆ ବିଦ୍ୟାଳୟକୁ ।

ସୁରେଶ ବଳଙ୍କ ଜଣେ ଭାଇ ପୁଅ ହୋଇଯାଇଥିଲେ ତେଲଦିଆ ନିକଟସ୍ଥ ସୋମପୁରକୁ । ଯାହାଙ୍କ ନିକଟକୁ ବାଙ୍କୁଙ୍କ ଭାଇ ପୁଅ ହୋଇ ଯାଇଥିଲେ ତାଙ୍କୁ ସେମାନେ ସମସ୍ତେ ସାନ ବାପା ଡାକନ୍ତି । ଏହି ସୂତ୍ରରୁ ବାଙ୍କୁ ପହଞ୍ଚିଥିଲେ ତେଲଦିଆ ସ୍କୁଲରେ । କିନ୍ତୁ ଢିଙ୍କି ଯେଉଁଠିକି ଗଲେ ଧାନ କୁଟିବ । କଟକ ଆଉ ତେଲଦିଆ ଭିତରେ ପ୍ରଭେଦ ବା କଣ । ଏଠି ମହାନଦୀ ସେଠି ଯୋର । ବାଙ୍କୁ ହସି ହସି କୁହନ୍ତି – ସାନବାପାଙ୍କ ଗାଁରୁ ତେଲଦିଆସ୍କୁଲ ଥିଲା ୫ କି..ମି । ବାଟରେ ଗୋଟିଏ ଯୋର ପଡେ । ତା ଉପରେ ବାଉଁଶ ବନ୍ଧା ହୋଇଥାଏ । ସେହି ବାଉଁଶ ଧରି ଯୋର ପାର ହେବାକୁ ହୁଏ । ପ୍ରାୟ ସବୁଦିନେ ସେ ଗଳି ପଡନ୍ତି ଯୋରରେ । ଶାର୍ଟ ପ୍ୟାଣ୍ଟ୍ ଓଦା ହୋଇଯାଏ । ସ୍କୁଲ ଯିବା ବନ୍ଦ । ସେତେବେଳକୁ ତାଙ୍କ ସାନବାପା ରଘୁନାଥପୁରରେ ଆର.ଆଇ. ଭାବରେ କାର୍ଯ୍ୟ କରୁଥିଲେ । ସେ ବାଧ ହୋଇ ବାଙ୍କୁଙ୍କୁ ରଘୁନାଥପୁର ନେଇ ଆସିଥିଲେ । ରଘୁନାଥପୁରରୁ ଯିବାଆସିବା କରି କୌଣସିମତେ ସେହି ତେଲଦିଆ ବିଦ୍ୟାଳୟରୁ ମାଟ୍ରିକ ପାସ୍ କରିଥିଲେ ସୁରେଶ ବଳ ।

ସୁରେଶ ବଳଙ୍କ ପିଲାଦିନର କଥା ପରିଷ୍କାର ଭାବରେ ଜଣାଇ ଦିଏ ତାଙ୍କର ପାଠ ପଢାରେ ଆଗ୍ରହ ନ ଥିଲା । କିନ୍ତୁ ଆଗ୍ରହ ଥିଲା କଳା ପ୍ରତି । ମାଆ ଲୀଳାବତୀ ଜାଣି ପାରିଥିଲେ ପୁଅର ପାଠରେ ଆଗ୍ରହ ନାହିଁ । କିନ୍ତୁ ଆଗ୍ରହ ଅଛି ତବଲା ଶିଖିବାରେ । ସେଥିପାଇଁ ଜଣେ ତବଲା ଶିକ୍ଷକଙ୍କୁ ଘରକୁ ଡାକିଲେ । କିଛିଦିନ ତବଲା ଶିଖିଲେ ବାଙ୍କୁ । କିନ୍ତୁ ଦୁର୍ଯୋଗକୁ ତାଙ୍କ ହାତଟି ଏତେ ପରିମାଣରେ ଝାଳେଇଲାଯେ ତବଲା ବଜାଇବା ସମ୍ଭବ ହେଲା ନାହିଁ । ତାପରେ ଆରମ୍ଭ ହେଲା ଗୀତ ଶିକ୍ଷା । ନ୍ୟସନାଲ ମ୍ୟୁଜିକ୍ ଆସୋସିଏସନରେ ତାଙ୍କର ନାଁ ଲେଖାଯାଇଥିଲା । ଗୁରୁ ପର୍ଶ୍ଵମେଶ୍ଵର ଜେନା, ପଣ୍ଡିତ କୁଣ୍ଡଳାଦିଙ୍କ ଭଳି ପ୍ରସିଦ୍ଧ ଗୁରୁମାନେ ସେତେବେଳେ ନ୍ୟାସନାଲ ମ୍ୟୁଜିକ ଆସୋସିଏସନରେ ଗୁରୁ ଥିଲେ । କିନ୍ତୁ ସେଥିରେ ମଧ୍ୟ ଅସୁବିଧା ରହିଲା । ବାଙ୍କୁ ଖୁବ ଖୋଲା ଖୋଲି ଭାବରେ କୁହନ୍ତି, ଜଣେ ସଂଗୀତକାର ହେବା ଭଳି ଯୋଗ୍ୟତା ମୋର ନ ଥିଲା । ମୁଁ ସେତେ ଭଲ ଗାଉ ନ ଥିଲି । କୁହାଯାଉ ଗୀତ ହେଲା ନାହିଁ । ତେଣୁ ଗୀତ ଶିକ୍ଷା ଅଧାରେ ରହିଲା । ସେତେବେଳକୁ ତାଙ୍କର ଦୁଇ ଜଣ ଭଉଣୀ ଶାନ୍ତି ବଳ (ଡଲି) ଓ ଜୟନ୍ତୀ ବଳ ଅଭିନୟ କରୁଥିଲେ । ପୂରାପୂରି ପେଶାଦାର ଭିତ୍ତିରେ ନ ହେଲେ ମଧ୍ୟ ସେମାନେ ବ୍ୟସ୍ତ ଥିଲେ ଥିଏଟର ଜଗତରେ । ତାଙ୍କ ସହିତ ବାଙ୍କୁ ଥିଏଟର ଦେଖିବାକୁ ଯାଆନ୍ତି । ସେଇଠୁ ଅଭିନୟ ପ୍ରତି କିଛି ଆଗ୍ରହ ଜନ୍ମିଲା । ପୂର୍ବରୁ ତେଲଦିଆରେ ସ୍କୁଲ ପଢା ବେଳେ 'ସାବତ ମାଆ' ନାମକ ଏକ ନାଟକରେ ଅଭିନୟ କରିଥିଲେ । ନିଜ ସାହିରେ ନାଟକ ହେବା ବେଳେ ଥରେ ଅଧେ ହାସ୍ୟ ଅଭିନୟ କରିଥିଲେ । ମୋଟାମୋଟି ଭାବରେ ଜୀବନ ଧାରା ଧୀରେ ନାଟକ ଆଡକୁ ମୋଡି ହୋଇ ଚାଲିଲା । ବାଙ୍କୁ, ନାଟକର ପ୍ରେମରେ ପଡ଼ିଲେ । ଏ ପ୍ରେମ କ୍ରମଶଃ ଏତେ ବଢ଼ିଗଲା ଯେ, ଶେଷକୁ ନାଟକ ପାଇଁ ତାଙ୍କ ସାହି ଭାଗ ହେବାକୁ ବସିଥିଲା । ଘଟଣା ହେଉଛି, କଲିକତା ପରି

ସେତେବେଳେ କଟକରେ ଥିଲା ଫୁଟବଲ ମାନିଆ । ଦରଘାବଜାରର ଜୟଦୁର୍ଗା କ୍ଲବ୍ ଥିଲା ବେସ୍ ନାଁ କରା ଫୁଟବଲ କ୍ଲବ୍ । ସେହି ଫୁଟବଲ କ୍ଲବ୍‌ର ଖର୍ଚ୍ଚ ଉଠାଇବା ପାଇଁ ନଖୁ ସାହୁ ଜଳଖିଆ ଦୋକାନରେ ଗୋଟିଏ ଡବା ଟଙ୍ଗା ହୋଇଥାଏ । ସେହି ଡବାରୁ ସଂଗୃହୀତ ଟଙ୍କାରେ ଖେଳ ଖର୍ଚ୍ଚ ଉଠେ । ବାଙ୍କୁଙ୍କ ନାଟୁଆ ଦଳ କହିଲେ ଆମର ଗୋଟିଏ ଡବା ରହିବ । ସେଥିପାଇଁ ଗଣ୍ଡଗୋଳ ହେଲା । ଏମିତି କେତେଥର ହୋଇଛି, ଫୁଟବଲବାଲାଙ୍କ ଡବା ଭାଙ୍ଗି ନାଟୁଆଦଳ ଟଙ୍କା ନେଇଗଲେ । ଗଣ୍ଡଗୋଳ ଏତେ ତୀବ୍ର ହେଲା ଯେ ସାହି ଭାଗ ହେବାକୁ ବସିଥିଲା । କିନ୍ତୁ ଭାଗ ନ ହୋଇ ନାଟୁଆ ଦଳ ଛକ ପାଖରୁ ଓହରି କଦମ୍‌ରସୁଲ ପାଖରେ ନିଜକୁ ସୀମିତ କରିଦେଲେ ।

କଟକର ଜଳଖିଆ ଦୋକାନରେ ଖଟିର ସଂସ୍କୃତି ବେଶ୍ ପୁରୁଣା । ଓଡିଶାର ବହୁ ପ୍ରସିଦ୍ଧ କଳାକାରଙ୍କ ଜୀବନ ଆରମ୍ଭ ହୋଇଛି ଛକ ଖଟିରୁ । ଦରଘାବଜାରର ନଖୁ ସାହୁ ଦୋକାନକୁ ଆସୁଥିଲେ ମଞ୍ଚ ଅଭିନେତା ନିରଞ୍ଜନ ପାଣ୍ଡେ । ଯେହେତୁ ବାଙ୍କୁଙ୍କ ଭଉଣୀ ମାନେ ଅଭିନୟ କରୁଥିଲେ ନିରଞ୍ଜନବାବୁ ବାଙ୍କୁଙ୍କୁ ଜାଣିଥିଲେ । ଜଳଖିଆ ଦୋକାନରେ ବସିବା ଭିତରେ ସେ ଜାଣିପାରିଲେ ବାଙ୍କୁଙ୍କର ଅଭିନୟପ୍ରତି ଭୀଷଣ ଆଗ୍ରହ ରହିଛି । ସେ ତାଙ୍କୁ ସାଙ୍ଗରେ ଧରି କେତେଥର ବାବାସାଗର ଦାସ ବୀଦ୍ୟାପୀଠ, ନିମଚଉଡି ଇତ୍ୟାଦି ସ୍ଥାନରେ ହେଉଥିବା ନାଟକରେ ଅଭିନୟ କରିବାର ସୁଯୋଗ ଦେଲେ । ଏସବୁ ଅଭିନୟ ଭିତରେ ବାଙ୍କୁଙ୍କର ନିଜ ଭିତର ଏକ ଆତ୍ମବଳ ଜାଗିଥିଲା । ସେହି ଆତ୍ମ ବିଶ୍ୱାସ ବଳରେ ସେ ଜନତା ଥିଏଟରର ପରିଚାଳକ ପ୍ରଫୁଲ୍ଲ ଶାସ୍ତ୍ରୀଙ୍କୁ ଅଭିନୟର ସୁଯୋଗ ଦେବାପାଇଁ ଅନୁରୋଧ କରିଥିଲେ । ଭଉଣୀ ଡଲିଙ୍କ ପାଇଁ ପ୍ରଫୁଲ୍ଲବାବୁ ମଧ୍ୟ ବାଙ୍କୁଙ୍କୁ ଜାଣିଥିଲେ । କିନ୍ତୁ ସେତେବେଳକୁ ଜନତାଦଳ ଭାଙ୍ଗି ଆସିଲାଣି । କେବଳ ବଞ୍ଚାଇ ରଖିବାର ଉଦ୍ୟମ ଚାଲିଥିଲା । ହୁଏତ ସେଇଟା ବାଙ୍କୁଙ୍କ ପାଇଁ ଅଶୀର୍ବାଦସ୍ୱରୂପ ହୋଇଥିଲା । ଇଏ ପ୍ରାୟତଃ ୧୯୭୩ ବା ୧୯୭୪ର ଘଟଣା ହେବ । ସେତେବେଳେ କାର୍ତ୍ତିକ ଘୋଷଙ୍କର 'ବାରବଧୂ' ନାଟକର ମଂଚାଭିନୟ ହେଲା । ସେଇଥିରେ ରସିଆ ବୋଲି ଏକ ମାଇଚିଆ ଚରିତ୍ରରେ ବାଙ୍କୁ ଅଭିନୟ କରିଥିଲେ । ନାଟକଟି ଖୁବ ସଫଳ ହୋଇଥିଲା । ବ୍ୟବସାୟିକ ସଫଳତା ହାସଲ କରି ଦୀର୍ଘଦିନ ଧରି ଟିକେଟ କଳାବଜାରରେ ବିକ୍ରି ହୋଇଥିଲା । ସାଧାରଣ ସୋ ସହିତ ମ୍ୟାଟିନ ସୋ ମଧ୍ୟ ଯୋଡା ହୋଇଥିଲା । ବାଙ୍କୁଙ୍କର ସେହି ନାଟକରେ ଅଭିନୟ ଏତେ ସଫଳ ହୋଇଥିଲା ଯେ, ଥିଏଟର ଜଗତର ଜଣେ କଳାକାର ଭାବରେ ତାଙ୍କର କିଛି ସ୍ୱୀକୃତି ଆସି ଯାଇଥିଲା । ସେହି ନାଟକ ପରେ ପରେ ଜନତାର ରେଗୁଲାର ସୋ 'ଷ୍ଟେସନ ମାଷ୍ଟର' ଇତ୍ୟାଦିରେ ତାଙ୍କୁ ଅଭିନୟ କରିବାର ସୁଯୋଗ ମିଳିଥିଲା ।

ଜନତା ପରି ସେତେବେଳକୁ ଅନ୍ନପୂର୍ଣ୍ଣା ମଧ୍ୟ ଭାଙ୍ଗି ଆସୁଥିଲା । କହିବାକୁ ଗଲେ ଥିଏଟରମାନଙ୍କର ମୃତ୍ୟୁ ଆସନ୍ନ ଥିଲା । ସୁରେଶ ବଳ କୁହନ୍ତି - ଏହାର କାରଣ ଥିଲା

ଆବସର୍ଡ ଡ୍ରାମା । ନାଟକ ସହିତ ଯୋଡା ଏହି ଇଂରାଜୀ ଶବ୍ଦଟି ଲୋକଙ୍କ ନିକଟରୁ ମନୋରଞ୍ଜନକୁ ଛଡାଇ ନେଇ ଥିଲା । ସିନେମା ଲୋକଙ୍କୁ ତିନି ଘଣ୍ଟାର ଭରପୂର ଖୁସି ଦେଉଥିବା ବେଳେ । ନାଟକ ମୁଣ୍ଡକୁ ଓଜନିଆ କଲା । ଲୋକେ ଆଉ ନାଟକ ପ୍ରତି ଆଗ୍ରହ ଦେଖାଉ ନ ଥିଲେ । ଥିଏଟରର ମୃତ୍ୟୁ ଆସନ୍ନ ଥିବା ବେଳେ ସୁରେଶ ବଳ ପ୍ରବେଶ କରିଥିଲେ ଥିଏଟର ଜଗତରେ । ତାଙ୍କର ଅଭିନୟ ପ୍ରତିଭା ବିଷୟରେ ଜଣା ପଡିବା ପରେ ନିରଞ୍ଜନ ଶତପଥୀ, ବୀରେନ୍ ରାଉତରାୟ ପ୍ରମୁଖ ନିଜ ନିଜ ନିର୍ଦ୍ଦେଶିତ ନାଟକରେ ବାଙ୍କୁଙ୍କୁ ସୁଯୋଗ ଦେଇଥିଲେ ।

ଅନ୍ନପୂର୍ଣ୍ଣା ଥିଏଟର ପ୍ରାୟ ଭାଙ୍ଗିଯିବା ପରେ, ଡ଼ଁକାଡକିରେ ମଧ୍ୟ କେତେଦିନ ନାଟକ ଅଭିନୀତ ହୋଇଥିଲା । ସେହି ସମୟରେ ବୀରେନ ବାବୁ 'ମହାରାଣା ପ୍ରତାପ' ନାଟକଟିକୁ ମଂଚସ୍ଥ କରାଇଥିଲେ । ଏହାପରେ 'ଚିତ୍ରାପ୍ରେଲାର ରଜୋତ୍ସବ'ରେ ବାଙ୍କୁଙ୍କର ସାକ୍ଷାତ ହୋଇଥିଲା ନାଟ୍ୟଗୁରୁ କୃଷ୍ଣଚନ୍ଦ୍ର ସିଂହ ଙ୍କ ସହିତ । ଅଭିନେତା ବାଙ୍କୁ କୃଷ୍ଣଚନ୍ଦ୍ର ସିଂହଙ୍କୁହିଁ ସ୍ୱୀକାର କରନ୍ତି ନିଜର ଗୁରୁ ଭାବରେ । ସେହିଁ ତାଙ୍କୁ ଶିଖାଇଥିଲେ ଅଭିନୟର ପ୍ରକୃତ ସଜ୍ଞା ।

ପୂର୍ବରୁ କୁହାଯାଇଛି ଯେ ବାଙ୍କୁଙ୍କ ଭଉଣୀ ଡଲି ଏବଂ ଜୟନ୍ତୀ ଥିଲେ ଜଣେ ଜଣେ ସୌଖୀନ ନାଟ୍ୟ କଳାକାର । ଥରେ ଗୋଟିଏ ନାଟକରେ ଅଭିନୟ କରିବାପାଇଁ ଡଲି ଯାଇଥିଲେ ଟିଟିଲାଗଡ । ନାଟକର ନିର୍ଦ୍ଦେଶକ ଥିଲେ ଦିନେଶ ରାଉତ । ହଟାତ ଜଣେ କଳାକାର କୌଣସି କାରଣ ବଶତଃ ଅଭିନୟ କଲେ ନାହିଁ । ସମସ୍ତେ ଚିନ୍ତିତ ଥିଲେ । ଦିନେଶ ବାବୁ କହିଲେ ବାଙ୍କୁ ଅଛି, ସେ ଅଭିନୟ କରିବ । ସେଇଆ ହେଲା ବାଙ୍କୁ ସେ ନାଟକରେ ଅଭିନୟ କରିଥିଲେ ଏବଂ ସଫଳ ହୋଇଥିଲେ । ଏମିତି ଏମିତି ବାଙ୍କୁ କଟକ ବାହାରେ ମଧ୍ୟ ନିଜ ଅଭିନୟ ପ୍ରତିଭାର ପ୍ରଦର୍ଶନ କରିଚାଲିଲେ । ବିଶେଷତଃ ଗୁରୁ କୃଷ୍ଣଚନ୍ଦ୍ର ସିଂହ ବରଗଡ ଧନୁଯାତ୍ରାକୁ ଯାଆନ୍ତି ସେଠାରେ ନାଟ୍ୟ ନିର୍ଦ୍ଦେଶନା ଦେବାପାଇଁ । ସେ ବାଙ୍କୁଙ୍କୁ ସାଥିରେ ନେଇକି ଗଲେ ।

କୃଷ୍ଣଚନ୍ଦ୍ର ସିଂହଙ୍କ ବିଷୟରେ ସୁରେଶ ବଳ କୁହନ୍ତି - ତାଙ୍କ ଠାରୁ ମୁଁ ଅନେକ କିଛି ଶିଖିଛି । ଗୋଟିଏ କଥା କହିବି, ସେ ନିର୍ଦ୍ଦେଶନା ଦେବା ବେଳେ ତଳକୁ ମୁହଁ ପୋତି ଥାଆନ୍ତି । କିନ୍ତୁ ତୁମର ମଂଚ ଅବସ୍ଥିତି ସାମାନ୍ୟ ବଦଳି ଗଲେ ତୁରନ୍ତ ନିଜର ମନ୍ତବ୍ୟ ଦିଅନ୍ତି । ଏଭଳି କେମିତି ସେ କରିପାରୁଛନ୍ତି ବୋଲି ଜାଣିବାକୁ ମନରେ ଆଗ୍ରହ ହୋଇଥିଲା । ଦେଖିବା ବେଳକୁ ଅତି ସାଧାରଣ କଥା, ଦୂରତା ଏବଂ ଅଙ୍ଗଭଙ୍ଗି ଶବ୍ଦ ତରଙ୍ଗ ବା ଧ୍ୱନୀ ତରଙ୍ଗରେ ପରିବର୍ତନ ଆଣେ । ସେଭଳି ପରିବେର୍ତନକୁ ଖୁବ୍ ଶୀଘ୍ର ଧରିପାରନ୍ତି କୃଷ୍ଣ ବାବୁ । ସେ ସମୟରେ ଅକ୍ଷୟ ମହାନ୍ତି (କାଶ୍ୟପ), ଦୀନେଶ ରାଉତ ଇତ୍ୟାଦିଙ୍କ ଭଳି ମାତ୍ର

କେତେଜଣ ସୌଖୀନ ନିର୍ଦ୍ଦେଶକ ନାଟ୍ୟ ନିର୍ଦ୍ଦେଶନା ଦେଉଥିଲେ । ସେମାନଙ୍କ ମଧ୍ୟରେ କୃଷ୍ଣଚନ୍ଦ୍ର ସିଂହ ଥିଲେ ଅନ୍ୟତମ ।

ନାଟ୍ୟ ଜଗତ ସହିତ ସମ୍ପର୍କ ବଢ଼ିବା ଭିତରେ, ବାଙ୍କୁ ନିଜ ସାହିରେ ଏକ ନାଟ୍ୟ ଗୋଷ୍ଠି ବା କ୍ଲବ୍ ସୃଷ୍ଟିକରିସାରିଥିଲେ । ନାଁ ଦେଇଥିଲେ 'ଉମାଚରଣ ସାଂସ୍କୃତିକ ପରିଷଦ' । ସେହି ନାଟ୍ୟ ଗୋଷ୍ଠୀଟି ପ୍ରତିଶ୍ରୁତି ବଦ୍ଧ ଥିଲେ ଯେ କୌଣସି ନାଟକ ପ୍ରତିଯୋଗିତାକୁ ଯିବେନାହିଁ । କାରଣ ପ୍ରତିଯୋଗିତାକୁ ଗଲେ ତାଙ୍କୁ ଆବସର୍ଡ ଡ୍ରାମା ମଂଚସ୍ଥ କରିବାକୁ ପଡ଼ିବ । ସେଠି ଡାଇଲଗରେ କହିବାକୁ ପଡ଼ିବ – 'ପାନ କଡା ୫୦ ଟଙ୍କା । କଟକରେ ଛେଳି ବହୁତ' । ଏହାକୁ ବୁଝୁ ବୁଝୁ ଦର୍ଶକ ନାକେଦମ୍ । କିନ୍ତୁ ଡାଇଲଗର ଅର୍ଥ ଛେଳି ପାନ ପତ୍ର ଖାଇଯାଉଛନ୍ତି, ତେଣୁ ପାନର ଦାମ୍ ବଢ଼ିଛି । ଏସବୁକୁ ପସନ୍ଦ କରୁ ନଥିଲେ ବାଙ୍କୁଙ୍କ ଗୋଷ୍ଠୀ । କିନ୍ତୁ ଏ ପ୍ରତିଶ୍ରୁତି ଭାଙ୍ଗି ଗୁରୁ କୃଷ୍ଣଚନ୍ଦ୍ର ସିଂହଙ୍କ ଅନ୍ତେ ୧୯୮୩ରେ ଅନ୍ନପୂର୍ଣ୍ଣା ଦ୍ୱାରା ଅନୁଷ୍ଠିତ ତୃତୀୟ ରାଜ୍ୟସ୍ତରୀୟ ନାଟକ ପ୍ରତିଯୋଗିତାରେ ଭାଗନେଇଥିଲେ । ନାଟକର ନାଁ ଥିଲା 'ବିସ୍ମୃତି' । ନାଟକଟିକୁ ରଚନା କରିଥିଲେ ସଂଜୟ ସତପଥୀ ଏବଂ ନିର୍ଦ୍ଦେଶନା ଦେଇଥିଲେ ନିଜେ ସୁରେଶ ଚନ୍ଦ୍ର ବଳ । ଆଶ୍ଚର୍ଯ୍ୟ କଥା ସେହି ପ୍ରତିଯୋଗିତାର ପ୍ରାୟ ସମସ୍ତ ପୁରସ୍କାର ଯଥା ବେଷ୍ଟ ପ୍ରଡକ୍ସନ, ବେଷ୍ଟ ଡାଇରେକ୍ସନ, ବେଷ୍ଟ ଆକ୍ଟର ଇତ୍ୟାଦି ପୁରସ୍କାର ଗୁଡିକ ବାଙ୍କୁଙ୍କ ଦଳ ଗୋଟାଇ ଆଣିଥିଲା ।

ଧୀରେ ଧୀରେ ବାଙ୍କୁଙ୍କ ପାଇଁ ନାଟକ ଅମ୍ଳଜାନ ସାଜିସାରିଥିଲା । ବିନା ଅମ୍ଳଜାନରେ ଯେମିତି ଜଣେ ଘଡିଏ ବଂଚିପାରିବ ନାହିଁ । ଠିକ୍ ସେମିତି ଗୋଟିଏ ଦିନ ନାଟକ ଚର୍ଚ୍ଚା ବିନା ବାଙ୍କୁ ପାଣିରୁ ବାହାରି ଯାଇଥିବା ମାଛ ପରି ଛଟ ପଟ ହେଉଥିଲେ । ନାଟକର ପ୍ରେମରେ ବାଙ୍କୁ ଏପରି ମସଗୁଲ ଥିଲେ ଯେ, ପ୍ରତ୍ୟେକ ଦିନ ଅଫିସରୁ ଫେରି ସିଧା ଚାଲିଯାଆନ୍ତି ଅନ୍ନପୂର୍ଣ୍ଣା । ନଚେତ କେଉଁ ଖଟିକୁ । ଘରକୁ ଫେରିବା ବେଳକୁ ରାତି ୨ଟା । ଏମିତି ବି ହୋଇଥିଲା, ବାପାଙ୍କ ଦେହ ଭୀଷଣ ଖରାପ । ମୃତ୍ୟୁ ଆସନ୍ନ ଥିଲା । କିନ୍ତୁ ନାଟ୍ୟ ପାଗଳ ବାଙ୍କୁ ବାପାଙ୍କ କଥା ଭୁଲି ନିଜର କଳାକାର ବନ୍ଧୁ ସଂଗ୍ରାମ ମହାପାତ୍ରଙ୍କ ବହି ଦୋକାନରେ ବସି ସେକ୍ସପିୟରଙ୍କ ନାଟକ ଉପରେ ଚର୍ଚ୍ଚା କରିଚାଲିଥିଲେ । ହଟାତ ମନେପଡିଗଲା, ବାପାଙ୍କ ଦେହ ଖରାପ ଥିଲା । ତୁରନ୍ତ ସେ ଫେରି ଆସିଥିଲେ ଘରକୁ । ବାପା ଯେମିତି ଅପେକ୍ଷା କରିଥିଲେ ବାଙ୍କୁଙ୍କୁ । ତାଙ୍କ ହାତରୁ ଗୋଟିଏ ଚାମଚ ପାଣି ପିଇବା ପରେ ପରେ ସଂସାରରୁ ବିଦାୟ ନେଇଥିଲେ ।

ମଞ୍ଚ ଅଭିନୟର ଅଭିଜ୍ଞତା ବଢ଼ିବଢ଼ି ଚାଲିଥିଲା । ଅଜଣା ସମ୍ପତି, ମୁଠାଏ ମାଟି, ଛାଇର ଉହାଡ଼େ, ଅସତ୍ୟ ସହରର ଉପକଥା, ମାଟିର ମଣିଷ, ଐତିହାସିକ ଦୁର୍ଗ ବାରବାଟୀ ଭଳି ଶତାଧୀକ ନାଟକରେ ଅଭିନୟ ଏବଂ ଅନେକ ନାଟକରେ ନିର୍ଦ୍ଦେଶନା ଦେଇ ବାଙ୍କୁ

ନାଟ୍ୟକଳା ଜଗତରେ ନିଜର ଏକ ପରିଚୟ ସୃଷ୍ଟି କରିପାରିଥିଲେ । କିନ୍ତୁ ସମୟ ଆଗକୁ ବଢିବା ଭିତରେ ମନଭିତରେ ନୂତନ ଆଗ୍ରହଟିଏ ମଧ ଜନ୍ମ ନେଇସାରିଥିଲା । ଆଗ୍ରହ ଥିଲା ଚଳଚ୍ଚିତ୍ରରେ ଅଭିନୟ ପାଇଁ । କାରଣ ଏହା ଥିଲା ଯୁଗ ରଚିର ପ୍ରଥମ ପସନ୍ଦ । କିନ୍ତୁ ମନରେ ସ୍ୱାଭିମାନ ଅନେକ । କାହାକୁ ଅନୁରୋଧ କରିବାର ପ୍ରଶ୍ନ ଉଠୁନାହିଁ । ଏମିତି ସମୟରେ ନିଜର ଆଶା ଫଳବତୀ ହୋଇଥିଲା ବନ୍ଧୁ ଅର୍ଜୁନ ସାମଲଙ୍କ ମାଧ୍ୟମରେ । ତାଙ୍କ ସାଂସ୍କୃତିକ ପରିଷଦର ଅର୍ଜୁନ ସାମଲ ଥିଲେ ଜଣେ ସକ୍ରିୟ ସଦସ୍ୟ । ପ୍ରାୟ ପ୍ରତ୍ୟେକ ନାଟକରେ ସେ ହିଁ ସଂଗୀତ ନିର୍ଦ୍ଦେଶନା ଦେଉଥିଲେ ଏବଂ ଗୀତ ଲେଖୁଥିଲେ ନିଶାକର ବେହେରା । ଇଏ ପ୍ରାୟ ୧୯୭୬ ବା ୭୭ ମସିହା କଥା । ଅର୍ଜୁନ ସାମଲ ତାଙ୍କର କିଛି ବନ୍ଧୁଙ୍କୁ ସାଥୀରେ ନେଇ ଏକ ଚଳଚ୍ଚିତ୍ର ପ୍ରସ୍ତୁତ କରିବାକୁ ଅଣ୍ଟା ଭିଡିଲେ । ଚଳଚିତ୍ରର ନାଁ ଥିଲା 'ସୁନା ସଂସାର' । ଚଳଚ୍ଚିତ୍ରର ନିର୍ଦ୍ଦେଶକ ଥିଲେ ଶିଶିର ମିଶ୍ର । ବନ୍ଧୁ ଅର୍ଜୁନ ସାମଲଙ୍କ ପାଇଁ ତାଙ୍କୁ ଏହି ଚଳଚ୍ଚିତ୍ରରେ ଅଭିନୟର ସୁଯୋଗ ମିଳିଲା । ସେ ଥିଲେ ଜଣେ ହାସ୍ୟ ଅଭିନେତା । କିନ୍ତୁ ଚଳଚ୍ଚିତ୍ରରେ ଅଭିନୟ କରୁଥାଆନ୍ତି ଓଡିଆ ଚଳଚ୍ଚିତ୍ର ଜଗତର ପ୍ରଖ୍ୟାତ ହାସ୍ୟ ଅଭିନେତା ନରି, ଜୟୀ, ଶ୍ୟାମଳେନ୍ଦୁଙ୍କ ଭଳି ପ୍ରତିଷ୍ଠିତ ହାସ୍ୟ ଅଭିନେତାମାନେ । ପ୍ରଥମ ସୁଟିଂ ଆରମ୍ଭ ହେବାର ଥିଲା କଟକର ମହାନଦୀକୂଳର ଫାଶୀଦିଆ ବରଗଛ ନିକଟରେ । ସେହି ପ୍ରଥମ ସୁଟିଂରୁହିଁ ଚଳଚିତ୍ର ବିଷୟରେ ନିଆରା ଅନୁଭୂତି ସାଉଁଟି ଥିଲେ ସୁରେଶ ବଳ । ସନ୍ଧ୍ୟା ପାଖାପାଖି ସେଟ୍‌ରେ ପହଞ୍ଚିବାକୁ କୁହାଯାଇଥିଲା । କିନ୍ତୁ ଅପରାହ୍ନ ୫ଟା ବେଳକୁ ବାଙ୍କୁ ନିଜ ସାଇକେଲଟି ଧରି ହାଜର ହୋଇଯାଇଥିଲେ ଫାଶୀଦିଆ ବରଗଛ ନିକଟରେ । କିଛି ସମୟ ବିତିଲା ପରେ ପହଞ୍ଚିଥିଲେ ଓଡିଆ ଚଳଚ୍ଚିତ୍ର ଜଗତର ଆଉଜଣେ ପ୍ରସିଦ୍ଧ ହାସ୍ୟ ଅଭିନେତା । ସେତେବେଳକୁ ସେ ପ୍ରତିଷ୍ଠିତ ହୋଇଗଲେଣି । ତାଙ୍କର ଭୟ ନ ଥିଲା କ୍ୟାମେରାକୁ କିମ୍ବା ପ୍ରଯୋଜକଙ୍କୁ । ସେ ବାଙ୍କୁଙ୍କୁ ଡାକିଲେ ଆସ ଯିବା ଗୋଟେ ଯାଗାକୁ । ସିନିୟର ଡାକୁଛନ୍ତି । ବାଙ୍କୁ ନିଜ ସାଇକେଲ ବାହାର କଲେ । ଦୁଇଜଣଯାକ ସାଇକେଲରେ ଯାଇ ଯୋଉଠି ପହଞ୍ଚିଲେ ତାକୁ ଦେଖି ବାଙ୍କୁଙ୍କ ହଲପ ଶୁଖିଗଲା । କିନ୍ତୁ ସିନିୟର କହିଲେ, ଆରେ କିଛି ନାହିଁ ମାର୍ ଟିକେ । ଅର୍ଥାତ ସେମାନେ ପହଞ୍ଚିଥିଲେ ଦେଶୀ ମଦଭାଟିରେ । ବଡ଼ ଡରି ଡରି ବାଙ୍କୁ ସାମାନ୍ୟ ମଦ୍ୟପାନ କରିଥିଲେ । ସେଠାରୁ ଫେରିବା ପରେ ରାତିରେ ସୁଟିଂ ଆରମ୍ଭ ହୋଇଥିଲା । ସାରା ରାତି ସୁଟିଂ ଚାଲିଲା; କିନ୍ତୁ ସକାଳୁ ଜଣା ପଡିଥିଲା, ଯାହା ସବୁ ସୁଟିଂ ହୋଇଥିଲା ସବୁ ନଷ୍ଟ ପ୍ରାୟ । ସେଦିନ ନିର୍ଦ୍ଦେଶକ ଶିଶିର ମିଶ୍ର ଏବଂ କ୍ୟାମେରାମ୍ୟାନ ଶ୍ରୀନିବାସ ମହାପାତ୍ରଙ୍କ ମଧ୍ୟରେ ଯେଉଁ ପାଟିତୁଣ୍ଡ ହୋଇଥିଲା, ତାହାକୁ ଆଜିଯାଏ ମନେରଖିଛନ୍ତି ସୁରେଶ ବଳ ।

ଇଏ ଥିଲା ସୁରେଶ ବଳଙ୍କର ଚଳଚ୍ଚିତ୍ର ଜଗତରେ ପାଦ ରଖିବାର କାହାଣୀ । ଏହା ପରେ ପରେ ସୁରେଶ ବଳ ଜୀବନସଂଗ୍ରାମ, ଗୌରୀ, ବଳିଦାନ, ଚକାଡ଼ୋଳା କରୁଛି

ଲୀଳା, କପାଳ ଲିଖନ, ଦଇବ ଦଉଡି, ଭାଗ୍ୟ ହାତେ ଡୋରୀ, ଅଣ୍ଟି ଛୁରୀ ତଣ୍ଟି କାଟେ, ମା'ଆ ଓ ମମତା, ଶାଶୂଘର ଚାଲିଯିବି, ସୌଭାଗ୍ୟବତୀ, କୃଷ୍ଣା କାବେରୀ, ଆମଘର ଆମସଂସାର, ସମ୍ ଥିଙ୍ଗ୍ ସମ୍ ଥିଙ୍ଗ୍ ଭଳି ବହୁ ଚଳଚିତ୍ର ଏବଂ ଏଇ ଜୀବନଟା ଏକ ନାଟକ, ଗାୟତ୍ରୀ, ଜୀବନ ଯମୁନାରେ ଜୁଆର ଉଠେ, ସ୍ୱାଭିମାନ୍ , ଶ୍ରୀଜଗନ୍ନାଥ, ଯେତେ କହିଲେ ଭାଗବତ, ପରୀ ଭଳି ଟି.ଭି. ସିରିୟଲ ଗୁଡିକରେ ଅଭିନୟର ଲମ୍ବା ଅନୁଭୂତି ସାଉଁଟିଛନ୍ତି । ତା' ସହିତ ଗୌରୀ ଗଣନାଟ୍ୟ, ଦିଗବିଜୟୀ ଅପେରା, ଗଡଚଣ୍ଡୀ ଅପେରା ଭଳି ବହୁ ଯାତ୍ରା ଦଳର ଯାତ୍ରାର ନିର୍ଦ୍ଦେଶନା ମଧ୍ୟ ଦେଇଛନ୍ତି । ଜଣେ କଳାକାର ଭାବରେ ମଞ୍ଚ, ଚଳଚ୍ଚିତ୍ର, ଟି.ଭି. ଏବଂ ଯାତ୍ରାଜଗତ ତାଙ୍କୁ ସ୍ୱୀକୃତି ଦେଇଛି, ସମ୍ମାନ ମଧ୍ୟ ଦେଇଛି । ରାଜ୍ୟ ଚଳଚ୍ଚିତ୍ର ପୁରସ୍କାର, ଚଳଚ୍ଚିତ୍ର ଜଗତ ପ୍ରତିଭା ସମ୍ମାନ, ଓଡିଶା ସିନେ କ୍ରିଟିକ୍ ସମ୍ମାନ, ଆମ ଭୁବନେଶ୍ୱର ଭଳି ବହୁ ଅନୁଷ୍ଠାନ ଦ୍ୱାରା ସେ ସମ୍ବର୍ଦ୍ଧିତ ଓ ସମ୍ମାନିତ ହୋଇଛନ୍ତି ।

ଏ ଭିତରେ ବାଙ୍କୁଙ୍କ ଜୀବନରେ ଅନେକ ଖୁସିର ମୁହୂର୍ତ୍ତ ଆସିଛି, ଦୁଃଖ ଏବଂ ଅନୁତାପର ମୁହୂର୍ତ୍ତ ମଧ୍ୟ ଆସିଛି । କେତେବେଳେ ଦିଗହଜା ନାବିକ ପରି ସେ ନିଜକୁ ସଂସାରସାଗର ବକ୍ଷରେ ପାଇଛନ୍ତି । କେତେବେଳେ ପୁଣି ଜୀବନ ତରୀ ଲାଗିଛି ସ୍ୱପ୍ନର ପ୍ରବାଳ ଦ୍ୱୀପଟି କୂଳରେ । ଉଭୟ ଅବସ୍ଥାକୁ ସହଜଭାବରେ ଗ୍ରହଣ କରିଛନ୍ତି ବାଙ୍କୁ । ସେ ଯେତେବେଳେ ପ୍ୟାରୀମୋହନ ଏକାଡେମୀରୁ ଲୁଚୁଥିଲେ ବା ତେଲଦିଆରେ ନାଳରେ ଖସିପଡୁଥିଲେ, ସେତେବେଳେ କେବେ ଭାବି ନ ଥିଲେ ସେ ମ୍ୟାଟ୍ରିକ ପାସ୍ କରି ଜଣେ ସରକାରୀ ଚାକିରିଆ ଭାବରେ ଜୀବନ କାଟିବେ । କିନ୍ତୁ ସେ ମ୍ୟାଟ୍ରିକ ପାସ୍ କରିଥିଲେ ଏବଂ ଆଡ୍‌ଭୋକେଟ୍ ଜେନେରାଲଙ୍କ ସରକାରୀ କାର୍ଯ୍ୟାଳୟରେ ଯୋଗଦେଇ ବଡ଼ବାବୁ ପଦବୀରୁ ଅବସର ନେଲେ । ଅବଶ୍ୟ ଏହି ଚାକିରି ପଛରେ ତତ୍କାଳୀନ ଆଡଭୋକେଟ୍ ଜେନେରାଲ ତଥା ନିଜ ସାହିର ବାସିନ୍ଦା ଗଙ୍ଗାଧର ରଥଙ୍କ ଅବଦାନ ବିଶେଷକରି ତାଙ୍କ ପୁତ୍ର ରଜତ ରଥଙ୍କ ଅବଦାନକୁ ମୁକ୍ତ କଣ୍ଠରେ ବାଙ୍କୁ ସ୍ୱୀକାର କରନ୍ତି ।

ଚାକିରି କରିବା ପରେ ବା ରୋଜଗାରକ୍ଷମ ହେବା ପରେ ଜଣେ ସଂସାର ଚଳାଇବା ପାଇଁ ଯୋଗ୍ୟ ହୋଇଥାଏ । ତେଣୁ ପିତାମାତା ନିଜ ପୁଅଟି ପାଇଁ ଭଲ ପାତ୍ରୀଟିଏ ଦେଖି ତା'ର ବିବାହ କରାଇଦେଇଥାଆନ୍ତି । ସେ ସମୟରେ ପ୍ରେମ ବିବାହର ପ୍ରାଦୁର୍ଭାବ ନ ଥିଲା । କାଁ ଭାଁ ଏହା ଘଟୁଥିଲା । ପ୍ରାୟତଃ ବାପା ମାଆ ପରିବାରର ସଦସ୍ୟ ମାନେହିଁ ପିଲାଟିର ବିବାହ ସ୍ଥିର କରୁଥିଲେ । ତାହାହିଁ ଘଟିଥିଲା ବାଙ୍କୁଙ୍କ ଜୀବନରେ । କିନ୍ତୁ ନିଜ ଜୀବନସାଥୀଙ୍କୁ ନେଇ ମନରେ କିଛି ପ୍ରଶ୍ନ ରହି ଯାଇଛି ବାଙ୍କୁଙ୍କର । ଏମିତି କାହିଁକି ଘଟିଲା ? ଯାହା ଘଟିଗଲା ସେଥିରେ ଭୁଲ୍ କାହାର ? ଇଏ ୧୯୭୯ ମସିହାର କଥା । ସେ ସମୟ ବାଙ୍କୁଙ୍କ ପାଇଁ ଥିଲା ବ୍ୟସ୍ତତାରେ ଭରା ସମୟ । ଖୁସି ସାଉଁଟିବାର ସମୟ । ନିଜ ଅଫିସ୍ କାର୍ଯ୍ୟ, ଅଫିସ୍‌ରୁ ସିଧା ଅନ୍ନପୂର୍ଣ୍ଣା ଥିଏଟର । ରାତି ପ୍ରାୟ ୨ଟାରେ ଘରକୁ । ପୁଣି ସକାଳୁ ଅଫିସ୍ ପାଇଁ ପ୍ରସ୍ତୁତି । ଏ

ଭିତରେ ଘରେ ବାହାଘର ପାଇଁ ପ୍ରସ୍ତାବ ଆଣିଲେ । ବାଙ୍କୁ ରାଜି ମଧ ହେଲେ । ବିବାହ ଅନୁଷ୍ଠିତ ହେଲା ପ୍ରମିଳାଙ୍କ ସହିତ । ସମୟ କ୍ରମେ ପ୍ରମିଳାଙ୍କ କୋଳ ମଣ୍ଡନ କଲେ ସୁରଜିତ୍, ସତ୍ୟଜିତ୍, ଅଭିଜିତ୍ ଏବଂ ସୁମିତା । ତଥାପି ନିଜ ବାହାଘରକୁ ନେଇ ମାନସିକ ଚିନ୍ତା ଘାରିଥିଲା ବାଙ୍କୁଙ୍କୁ । ଯାହା ସାଧାରଣରେ ପ୍ରକାଶ କରିବାର ଅର୍ଥ କିଛି ନାହିଁ । ସେ ବିଷୟରେ ବାଙ୍କୁ କୁହନ୍ତି – ଜୀବନର କୌଣସି ଗୁରୁତ୍ୱପୂର୍ଣ୍ଣ ମୋଡ଼ରେ ହଠାତ୍ କିଛି ନିଷ୍ପତି ନେବା ଭୁଲ କଥା । ସେଇ ନିର୍ଷତି ପାଇଁ ଆପଣଙ୍କୁ ସାରା ଜୀବନ ନିଜ କାନ ପାଖରେ ପ୍ରଶ୍ନଟିଏ ଶୁଭିବ । ଏହା ଭାଗ୍ୟ ନା ଭୁଲ୍ ? ହେଇପାରେ ଭାଗ୍ୟ ହେଇପାରେ ଭୁଲ୍ । ଏମିତି କହିବାର କାରଣ, ଯଦିଓ ତାଙ୍କ ପତ୍ନୀ ପ୍ରମିଳା ବଳ ଏବେ ମଧ ଖୁବ୍ ଭଲରେ ତାଙ୍କ ସାଥିରେ ଅଛନ୍ତି, କିନ୍ତୁ ... । ଏହା ଦେହପା ଭଲ ମନ୍ଦର କଥା । କିଛି ନିଜ ନିଜ ମାନସିକ ଅବସ୍ଥାର କଥା । ଏହି କାରଣକୁ ନେଇ ବାଙ୍କୁଙ୍କ ଜୀବନ ଅଚାନକ ଗୋଟିଏ ଅଜବ ମୋଡ଼ ନେଇଥିଲା । ଯାହାକୁ ସେ ନିଜେ ମଧ ଏ ଯାବତ ବୁଝି ପାରି ନାହାନ୍ତି ।

ବାଙ୍କୁ ଚାକିରି କରିଥିଲେ । ଚଳଚିତ୍ର, ଥିଏଟରରେ ଅଭିନୟ କରୁଥିଲେ । ବିବାହ କରି ସଂସାର କରିଥିଲେ । କହିବାକୁ ଗଲେ, ନୀଳଦରିଆର ତରୀଟି ଉତରା ପବନରେ ଆଗକୁ ଯିବାଭଳି ତାଙ୍କ ଜୀବନ ତରୀ ସୁରୁଖୁରୁରେ ଆଗକୁ ବଢିଥିଲା । ହଠାତ୍ ବାଙ୍କୁ ଅନୁଭବ କଲେ, ସେ ରୋଗାକ୍ରାନ୍ତ । ତାଙ୍କ ମୁଣ୍ଡରେ ଟ୍ୟୁମର ଅଛି । ଆୟୁଷ ଆଉ ବେଶୀଦିନ ନୁହେଁ । ଏହି ଚିନ୍ତା ତାଙ୍କୁ ଖାଇ ଚାଲିଲା । ସେ ଆଉ ସାଧାରଣ ମଣିଷଟିଏ ଭଳି ବ୍ୟବହାର କରିପାରିଲେ ନାହିଁ । କୁହାଯାଉ ଏକ ପ୍ରକାର ମାନସିକ ବ୍ୟାଧୀଗ୍ରସ୍ତ ହୋଇ ପଡିଥିଲେ । ତାଙ୍କ ଚାରିପାଖର ପୃଥିବୀ ରଙ୍ଗ ବଦଳାଇବା ଆରମ୍ଭ କରିଦେଲା । ଏହି ସମୟ ଥିଲା ବାଙ୍କୁଙ୍କ ଜୀବନର ସବୁଠାରୁ ଦୁଃଖଭରା ସମୟ । ନିଜ ଦେହ ଭୀଷଣ ଖରାପ । ଅନ୍ୟପଟରେ ପତ୍ନୀଙ୍କ ଅବସ୍ଥା ମଧ ଭଲ ନ ଥିଲା । ବାଙ୍କୁ ଭାବୁଥିଲେ ବିବାହ କରି ସେ କଣ ଭୁଲ କରିଦେଲେ ? ଏହି ଯେଉଁ ଅବସ୍ଥା ଦେଇ ସୁରେଶ ବଳ ଗତିକରିଥିଲେ, ଏହା ସମ୍ପୂର୍ଣ୍ଣ ଭାବରେ ଥିଲା ମାନସିକ । ଯାହାକୁ କେବଳ ଅନୁଭବ କରିହେବ । ବର୍ଣ୍ଣନା କରିହେବ ନାହିଁ । ଏମିତି ସମୟରେ ତାଙ୍କ ଜୀବନରେ ଆସିଥିଲେ ଆଉ ଜଣେ ନାରୀ । ସେ ହେଉଛନ୍ତି, ଅଭିନେତ୍ରୀ ତୃପ୍ତି ସିହ୍ନା । ତୃପ୍ତି ସିହ୍ନା ଥିଲେ ଜଣେ ଥିଏଟର ଅଭିନେତ୍ରୀ । ବାଙ୍କୁ ତାଙ୍କ ସହିତ ଅନେକ ଥିଏଟରରେ ଅଭିନୟ କରିଥିଲେ । ବାଙ୍କୁଙ୍କ ବ୍ୟବହାର ଚାଲିଚଳନ ହୁଏତ ଭଲ ଲାଗିଥିଲା ତୃପ୍ତିଙ୍କୁ । ଯେତେବେଳେ ବାଙ୍କୁ ଧୀରେ ଧୀରେ ରୋଗଗ୍ରସ୍ତ ହୋଇଚାଲିଲେ ତୃପ୍ତି ତାଙ୍କୁ ସାନ୍ତ୍ୱନାଦେବା ଭିତରେ ତାଙ୍କ ପ୍ରତି ଆକର୍ଷିତ ହୋଇଚାଲିଲେ । ଯଦି ଏହାକୁ ଗୋଟିଏ ବିନ୍ଦୁରେ ଦର୍ଶାଇବାକୁ ଚାହିଁବା ତେବେ ସେଇଟି ହେବ ନାଟକ 'ଅସତ୍ୟ ସହରର ଉପକଥା' । ଏହି ନାଟକର ନିର୍ଦ୍ଦେଶକ ଥିଲେ ବାଙ୍କୁ । ଏହି ନାଟକ ରିହରସାଲ ହେବା ବେଳଠାରୁ ମଂଚସ୍ଥ ହେବା ଭିତରେ ତୃପ୍ତି ଏବଂ ବାଙ୍କୁଙ୍କ ଭିତରେ ଅନ୍ତରଙ୍ଗତା ବହୁତ ବଢ଼ି ଯାଇଥିଲା ।

ତୃପ୍ତି ପାଖରେ ଥିଲେ ବାଙ୍କୁ ନିଜକୁ କିଛି ପରିମାଣରେ ସୁସ୍ଥ ମଣୁ ଥିଲେ । ସେ ସମୟରେ ବେଳେ ବେଳେ ବାଙ୍କୁ ନିଜକୁ ଏତେ ଅସହାୟ ଓ ଦୁର୍ବଳ ମଣୁଥିଲେ ଯେ ଥରେ ଥରେ ତାଙ୍କ ପାଇଁ  ନାଟକର ପ୍ରଦର୍ଶନ ବନ୍ଦ ହୋଯାଇଥିଲା । ଦେହ ଭଲ ନ ଲାଗିବାରୁ ଟିକେଟ ବିକ୍ରି ହୋଇସାରିବା ପରେ ମଧ୍ୟ ଥରେ ନାଟକ ମଂଚସ୍ଥ ହୋଇପାରି ନ ଥିଲା । ସମସ୍ତେ ବାଙ୍କୁଙ୍କ ଉପରେ ବିରକ୍ତ ହୋଇଥିଲେ । ସେହିଦିନ ବାଙ୍କୁ ଭାବିଥିଲେ, ମୁଁ ମରିଗଲେ କଣ କ୍ଷତି ହୋଇଯିବ ? ଯଥେଷ୍ଟ ବଂଚିଲିଣି ଆଉ ମରିବାକୁ ଭୟ କରିବା ଉଚିତ ନୁହେଁ । ଏହି ଭାବନା ଥିଲା, ହିନ୍ଦୀ ଚଳଚିତ୍ରର ମାଡ଼ଖାଇ ତଳେ ପଡିଥିବା ନାୟକ ଚିତ୍କାର କରି ଉଠିବା ଭଳି । ତା'ପରେ ସିନେମାର ନାୟକ ଯେମିତି ଦୁର୍ବୃତମାନଙ୍କୁ ପିଟିଚାଲେ, ବାଙ୍କୁ ଗୋଟି ଗୋଟି କରି ଦୁଶ୍ଚିନ୍ତା ମାନଙ୍କୁ ବାହାର କରିଦେଲେ ମସ୍ତିଷ୍କରୁ । ସେ ନିଜେ ବୁଝିପାରିଲେ ନାହିଁ କେତେବେଳେ ସେ ସମ୍ପୂର୍ଣ୍ଣ ସୁସ୍ଥ ହୋଇଗଲେ । କିନ୍ତୁ ତାଙ୍କ ମନ କହିଲା ସେ ସୁସ୍ଥ ହେବା ପଛରେ ତୃପ୍ତିଙ୍କର ଥିଲା ପ୍ରଚ୍ଛନ୍ନ ହାତ । ପରେ ପରେ ଅନେକ ନାଟକରେ ଏକତ୍ର ଅଭିନୟ ଦୁଇଜଣଙ୍କ ଭିତରେ ଘନିଷ୍ଠତା ବଢାଇ ଦେଇଥିଲା । ଏ ଘନିଷ୍ଠତାକୁ ପ୍ରେମ ବୋଲି ସ୍ୱୀକାର କରନ୍ତି ବାଙ୍କୁ । ତୃପ୍ତିହିଁ ତାଙ୍କ ପାଇଁ ପାଲଟିଗଲେ ସପ୍ନର ପ୍ରବାଳ ଦ୍ୱୀପ । ଏହି ପ୍ରେମ ସମୟରେ ଦୀର୍ଘ ଦୁଇବର୍ଷ କାଳ ତୃପ୍ତିଙ୍କ ଘରକୁ ବାଙ୍କୁ ଯିବା ଆସିବା କରିଥିଲେ । ବାଙ୍କୁ ଥିଲେ ବିବାହିତ । ତାଙ୍କର ପତ୍ନୀ ଓ ପରିବାର ଥିଲେ । ତେଣୁ ତୃପ୍ତିଙ୍କ ପରିବାରର ଅନିଚ୍ଛା ରହିବା ଅତ୍ୟନ୍ତ ସ୍ୱାଭାବିକ ଘଟଣା ଥିଲା । ତା'ସହିତ ସାହିଲୋକଙ୍କ ବିରୋଧ । ପୋଲିସର ଧମକ । ତଥାପି ସେ ତୃପ୍ତିଙ୍କ ହାତଧରି ତାଙ୍କୁ ଘରକୁ ଆଣିଥିଲେ । ସତେ ଯେମିତି ତୃପ୍ତିଙ୍କୁ ପତ୍ନୀ ଭାବରେ ପାଇବା ବାଙ୍କୁଙ୍କ ଜୀବନରେ ପୂର୍ଣ୍ଣତା ଆଣିଦେଇଥିଲା । ଆଶ୍ଚର୍ଯ୍ୟ, ଆଜିମଧ୍ୟ ତୃପ୍ତି ଏବଂ ପ୍ରମିଳା ଉଭୟ କଟକ ସି.ଡିଏ.ର ଏକ ଏମ୍.ଆଇ.ଜି. ଘରେ ବଡ଼ ହସଖୁସିର ଜୀବନ କଟାଉଛନ୍ତି । ତୃପ୍ତି ମାଆ ହୋଇ ନାହାନ୍ତି । ପ୍ରମିଳାଙ୍କ ପିଲାମାନେହିଁ ତାଙ୍କର ପିଲା । ଇଏ ବଡ ଅଦ୍ଭୁତ ଘଟଣା ଘଟିଯାଇଛି ବାଙ୍କୁଙ୍କ ଜୀବନରେ ।

୧୯୮୫ରେ ଦୂରଦର୍ଶନ, ୧୯୮୦ରେ ବେତାର କଳାକାର ଭାବରେ ସ୍ୱୀକୃତି ପାଇଥିବା ବାଙ୍କୁ ଏଯାବତ ପ୍ରାୟ ୧୪୦ ଚଳଚିତ୍ର ଏବଂ  ଶତାଧୀକ ନାଟକରେ ଅଭିନୟ କରିସାରିଛନ୍ତି । ଏବେ ମଧ୍ୟ ଅଭିନୟର ଧାରା ଅବ୍ୟାହତ ରହିଛି । ଚାକିରିରୁ ଅବସର ନେଇସାରିଥିବା ସୁରେଶ ବଳ କେବଳ ଅଭିନୟ ପାଇଁ ଏବେ ମଧ୍ୟ ଖୁବ୍ ବ୍ୟସ୍ତ ଓ ସୁସ୍ଥ ।



